# ବାପାଂକ ଷଣି ଆଂଗୁଠି

ଦୀପକ ପାଲ୍



ମହାନଦୀ ବୁକ୍‌ସ୍
ଭୁବନେଶ୍ୱର ॥ ୧୯୮୭

ବାପାଙ୍କ ସ୍ମୃତିରେ
—ଦୀପକ ॥

*Bapanka Bishi Anguthi* : a Volume of Stories in Oriya by Deepak Pal. Copyright 1987 by Smt. Sushmita Pal, Plot No. 213, Aerodrome Area, Bhubaneswar—751009. First Published in May 1987 by Surendra Nath Jagadeb, Mahanadi Books, Plot No. 3835 (P)/20, Mulyayan Vihar, G.G. P. Colony, Rasulgarh, Bhubaneswar—751010, India. Cover-Design : Uday Jena. Printed in India at Srikrishna Press, Cuttack-8 & Adwita Printers, Cuttack-2.

# ଆବଶ୍ୟକୀୟ

ମହାନଦୀ ବୁକ୍‌ସ୍‌ର ପ୍ରଫୁଲ୍ଲ କୁମାର ଜଗଦ୍ଦେବଂକ ବ୍ୟକ୍ତିଗତ ଉତ୍ସାହ, ଉଦ୍ୟମ ବିନା ଏ ଗଳ୍ପ ସଂକଳନଟିର ପ୍ରକାଶନ ଅତ୍ୟନ୍ତ ଦୁରୂହ-ବ୍ୟାପାର ଥିଲା । ଏଥିପାଇଁ ଜଗଦ୍ଦେବ ବାବୁଂକୁ କୃତଜ୍ଞତା ଜଣେଇବା ପାଇଁ ଯେଉଁ ଭାଷା ଆବଶ୍ୟକ ତାହା ମୁଁ ବର୍ତ୍ତିମାନ ସୁଦ୍ଧା ଅକ୍ତିଆର୍ କରିନାହିଁ । ତେଣୁ ତାଂକୁ କୃତଜ୍ଞତା ଜ୍ଞାପନ କରିବାରୁ ଆପାତତଃ ବିରତ ରହୁଛି ।

ସାହିତ୍ୟିକ କୃଷ୍ଣ ପ୍ରସାଦ ମିଶ୍ର ଓ ଗଣେଶ୍ୱର ମିଶ୍ର ଦଶ ବାର ବର୍ଷ ତଳେ ମୋର ଏଇ ଗଳ୍ପଗୁଡ଼ିକୁ ପ୍ରଥମେ ଆଲୋକକୁ ଆଣିବା ପାଇଁ ବ୍ୟକ୍ତିଗତ ଭାବେ ପ୍ରେରଣା ଯୋଗାଇଥିଲେ । ଏହି ଅବକାଶରେ ତେଣୁ ମୁଁ ସେମାନଙ୍କ ପ୍ରତି ମୋର ଋଣ ସ୍ୱୀକାର କରୁଛି ।

ସନ୍ନିବେଶିତ ଗଳ୍ପଗୁଡ଼ିକ ୧୯୭୦ରୁ ୧୯୮୩ ମଧ୍ୟରେ ମାନସ, ଝଂକାର, ଦିଗଂତ, ସମାବେଶ, ନବଲିପି, ପ୍ରଗତି, ଜିଗୀଷା ଇତ୍ୟାଦି ପତ୍ରିକାମାନଙ୍କରେ ପ୍ରଥମେ ପ୍ରକାଶ ପାଇଥିଲା । ଏହି ପତ୍ରିକାର ସଂପାଦକ/ସଂପାଦିକା ମାନଙ୍କ ନିକଟରେ ମୁଁ ସେଥିପାଇଁ କୃତଜ୍ଞ ।

ଦୀପକ ପାଲ୍

୧୨-୨-୮୭

ଯାଜପୁର

# ସୂଚୀ

ନିଜ ନିଜ ଭିତରେ ବୁଢ଼ୀମାଙ୍କୁ ମନେ ପଡ଼େ ।

ବହୁ ବର୍ଷ ବିତିଗଲାଣି, ମାତ୍ର ବୁଢ଼ୀମାଙ୍କ ଚିତ୍ରଟି ମୋର ସ୍ପଷ୍ଟ ମନେ ଅଛି । ମାସ ମାସ ବର୍ଷ ବର୍ଷ ହୋଇ, କେତେ ଦିନ ହେବ କେଜାଣି, ମୁଁ ବୁଢ଼ୀମାଙ୍କୁ ଦେଖିଆସିଛି ଆମ ଘର ତଳ ସାହାଲର ସେଇ ଗୋଟିଏ କୋଠରୀ ଭିତରେ । ସଂକୀର୍ଣ୍ଣ, ସନ୍ତସନ୍ତିଆ କୋଠରୀଟି, ନୁଆଁଣିଆ ଦୁଆର, ଅଥଚ ଢେଙ୍ଗା ଏରୁଣ୍ଡି ବନ୍ଧ । ପଶିଗଲେ ହଠାତ୍ ନୁଆଁଣିଆ ଲୋକର ମୁଣ୍ଡରେ ଧକ୍କା ବାଜେ, ବା ଏରୁଣ୍ଡି ବନ୍ଧରେ ଝୁଣ୍ଟି ପଡ଼ିବାକୁ ହୁଏ । କୋଠରୀଟି ଭିତରେ କିନ୍ତୁ ସବୁବେଳେ ଅନ୍ଧାର । କାଳୁକାଳୁଆ ଅନ୍ଧାର । ଦିନ ରାତି କିଛି ଫରକ ନାହିଁ । କୋଠରୀଟିରେ ଝରକା ନଥିଲା । ଆଗେ, ଅର୍ଥାତ୍ ବୁଢ଼ୀମାଙ୍କର ଏ କୋଠରୀ ଭିତରକୁ ଆସିବା ପୂର୍ବ ପର୍ଯ୍ୟନ୍ତ ଏଠି ବଡ଼ ବଡ଼ ଡୋଲିରେ ଧାନ ରହୁଥିଲା । ଏବେ ବି ଆଖି ବୁଜି ନୁଆଁଣିଆରେ ବସିପଡ଼ିଲେ ମୋ ନାକରେ ଧାନ ଝାଉଳର ଗନ୍ଧ ଚହଟି ଆସି ବାଜେ । ମନେହୁଏ, ଏ-ଇତ ଏବେକା କଥା—

ମୁଁ ବୁଢ଼ୀମାଙ୍କ କୋଠରୀ ଭିତରକୁ ପଶିଗଲି—କୋଠରୀ ତ ନୁହେଁ, ଅନ୍ଧାର ସୁଡ଼ଙ୍ଗଟିଏ । ତା'ର ଭିତରେ କେଜାଣି କେମିତି ବୁଢ଼ୀମା ଠିକ୍ ଠଉରେଇ ନିଅନ୍ତି; ପଚାରନ୍ତି—ପବନା ଅଇଲୁ କରେ ? ଚୁଣ୍ଡି ଗଲା ପରି ସ୍ୱରରେ ସେ ପଚାରନ୍ତି, ଭାରି ଦୁର୍ବଳିଆ ସ୍ୱର । ମୁଁ କିଛି ସମୟ ଚୁପ୍ ଦୋ ପାଞ୍ଚ ହୋଇ ଛିଡ଼ାହୋଇ ରହିବି । ବୁଢ଼ୀମା ଖିଙ୍କାରିଲା ପରି ପୁଣି ପଚାରିବେ—ଆରେ ପବନାଟି ? ମୁଁ ଡର ମରି ଗୋଟିଏ ଲମ୍ବା 'ହୁଁ' କରିଦେବି ।

—କଥା କହୁନାଉ କାହିଁକି । ଛିଡ଼ାଟା ହେଇଚ । ପାଟିରେ ଜୋକ ଲାଗିଚ ?

ପ୍ରକୃତ ପକ୍ଷେ, ମୋ' ଉପସ୍ଥିତ କଥା ବୁଢ଼ୀମାଙ୍କ ଗୋଚରକୁ ନ ଆସୁ, ଏହାହିଁ ମୁଁ ମନେ ମନେ ଚାହୁଁଥାଏ । ବୋଉ କହୁଥାଏ ବୋଲି ଯାହା ସେ ଅନ୍ଧାରୀ ଭିତରକୁ ପଶିବା କଥା । ଇସ୍କୁଲରୁ ବାହୁଡ଼ି ଆସୁ ନ ଆସୁଣୁ ବୋଉ ପଖାଳ ବେଳଏ ବାଢ଼ିଦେଇ କହିବ ହେଇରେ ଦେଖିଲୁ, ତୋ' ନାଗି କେମିତି ଅଙ୍ଗି ପିଜନାକୁଇଁ ବାଇଁ କରିଚି, ଖାଇଦେ ଖାଇଦେ, ଆହା ହା ମୋ' ଧନଟା କେତେ ଶୁଖିଲା ଦିଶୁଚି, କ ପାଠ ଏତେ ପଢ଼ୁଚୁ, ବା ଖିଆ ନେଉଛାନ୍ତି ଯାଏଁ, ଆ' ଭଗା ଆ' ଭଗା ଆ ଖାଇଦେ ଆଗ, ଆଉ ଅନେଇଲୁ, ହେଇ, ଖାଇସାରି ଉଣ୍ଡି ଆସିବୁଟି ଆଇ ଶୋଇଲେଣି କ ଚେଇଁଛନ୍ତି—

ସେଇ ରାତ୍ରି ଆସିବାଟି ହିଁ ମୋ' ପାଇଁ କାଳ ହୁଏ । ମୁଁ ଯେତେବେଳେ ସେ କୋଠରୀଟି ଭିତରକୁ ପଶିବି, ବୁଢ଼ୀମାଙ୍କୁ କେବେ ନିଦରେ ଶୋଇଥିବା ଦେଖିନାହିଁ ଆମିକ ତ ତାଙ୍କର ଧନ୍ଦ ନଥିଲା । ଆଖିରେ ମୋଟ ହୋଇ ପରଳ ପଡ଼ିଯାଇଥାଏ । ମତେ ସେତେବେଳେ ଭିଷଣ ଆଶ୍ଚର୍ଯ୍ୟ ଲାଗୁଥିଲା । ଆଉ ସତ କହିବାକୁ ଗଲେ, କେବେ କେବେ ଭାରି ଡର ବି ଲାଗୁଥିଲା । ଅନ୍ଧାର କୋଠରୀଟି ଭିତରେ ପଶିଯାଇ ଦେଖିବି ଧଳଦଆ ଧଳଦଆ କୋରଡ଼ ପଶା ଦୁଇଟା ଆଖି ଭିତରେ ଡୋଳା ଦୁଇଟା ଆଁ ମେଲାଇ ପଶ ଡବ ଡବ ହୋଇ ଚାହିଁଥିବ । ବୁଢ଼ୀମା ଭୂତ ତାଙ୍କ ଶୋଇଥିବେ । ଫାଁ ଗାଲଲ ପଶ । ମତେ ଯେମିତି ମଶିଆ ଦେହଟା ଉପରେ ଲ–ମ୍ବ ହୋଇ ଥରୁ ସରୁ ମଳ୍ଲା ତାଙ୍କ ହାଡ଼ା ବାଇ ହୋଇ ପଡ଼ିରହୁଚ ।

କେତୋଟି ମୁହୂର୍ତ୍ତ ସେଠି ଛିଡ଼ା ହୋଇ ରହିବା ପରଠୁ କୋଠରୀଟିର କାଳୁକାଳୁଆ ଅନ୍ଧାର ସହିତ ମୋ' ଆଖିର ଗୋଟିଏ ରଫା ହୋଇଯିବ । ଆଉ ତହିଁ କୋଠରୀଟିର ପ୍ରତିଟି ଚିଜ ସବୁ ଜଳ ଜଳ ହୋଇ ଦିଶିବାକୁ ଲାଗେ ମତେ । ବୁଢ଼ୀମାଙ୍କର ଚର୍ମଭୁଜ ପଶ ମୁଣ୍ଡଟା ଗୋଟିଏ ପିଟକୁ ଢଳି ପଡ଼ିଥିବ । ମେଲା ପାକୁଆ ପାଟିରୁ ନାଳ ଗଡ଼ିଯାଉଥିବ ତେଲ ଚିକିଟା କିପରି ତକିଆ ଉପରେ । ଆମ ଇସ୍କୁଲରେ ଥରେ ଗୋଟିଏ ମେଜିକବାଲା ଯେମିତି ଦି'ଖଣ୍ଡ ଲମ୍ବ ହାଡ଼ କୁଳେଇ କୁଳେଇ ମେଜିକ ଦେଖାଉଥିଲା ଅବିକଳ ସେଇମିତି ଦି'ଖଣ୍ଡ ହାଡ଼ ପରି ବୁଢ଼ୀମାଙ୍କ ହାତ ଦି'ଟା ଦି'କରକୁ ଲମ୍ବି ଥିବ । ଅନ୍ଧାରରେ ସେଇ ଦୃଶ୍ୟ ଉପରେ ଆଖିପଡ଼ିଲା ମାତ୍ରେଇ ମୋ' ସାରା ଦେହ ଶିର ଶିରେଇ ହୋଇ ଯାଉଥିଲା । କେମିତି ଗୋଟିଏ ଅଜଣା ଭୟ—କଳା କଟି କଟି ଗୋଟାଏ ଡର ମୋ' ଉପରେ ଯେମିତି ମାଡ଼ି ମାଡ଼ି ପଡ଼ୁଥିଲା । ମୁଁ କାଠ ପରି ଠିଆ ହୋଇ ରହି ଯାଉଥିଲି । ବୁଢ଼ୀମାଙ୍କ କାନ କନ୍ଦୁ ଠିକ୍ ବାର ନେଇ ପଗ୍ଭରନ୍ତି—ପବନା ଆଇଲୁ କିରେ ?

ମୁଁ ଛେପ ଢୋକ କହେ—ହଁ ।

—ଖାଇ ସାରିଲୁଣି ।

—ହଁ ।

—ତୁ ଏଟା ନିଗେଳ୍ କି' ଏଇଠି । ହେଞ୍ଜ ଗଡ଼ିଗଲଣି କି ?

ନାଇମ ଅଇ, ପଞ୍ଜ ନ'ଣ ଗଡ଼ିବ, ଜଳ୍ ଜଳ୍ ହୋଇ ଖସି ପଡ଼ୁଛି ପରା ।

କେଜାଣେରେ ପୁଅ, ପଞ୍ଜ ହେଲେଇଁ କ ଖସି ପଡ଼ୁଛ; କେମିତେ ଆଉ ଜାଣିବି କହ ? ଜଆଁ ନଗା ଆଖି ଦି'ଟାକୁ ତ ଆଉ ଦୁଶୁନାଇ । ଯମ ଘାଲ୍ବା ନାଇଁରେ ପୁଅ ।

ବୁଢ଼ୀମା କହୁ ଚାଲିଥିବେ । ମୁଁ ଠଣା ଭିତରୁ ଡିଆସିଲି କାଡ଼ି ଡିବା ଲଗାଇବା ଭିତରେ, ଟୋକ ଟୋକ, ଶ୍ୱାସ ନେଇ ପୁଣି ଶ୍ୱାସ ଛାଡ଼ି; ଅଟକେଇ ଅଟକେଇ ନାନା କଥା କହି ଚାଲିଥିବେ. ସେ । ପଚାରିବେ—ହଇରେ କ'ଣ ଖାଇଲୁ ଆଜି ? ତୁ'ଣ ରାନ୍ଧିଥିଲିଟି ବୋହୂ ? ବାଡ଼ିରେ ଶାଗ ଫଳିଚି, ସେ ଖୋଳ ଆଣି ଦି'ଟା ଖରଡ଼ି ଦେଲିନାଇଁ ? ନିଆଁ ନଗା, ପୋଡ଼ାମୁହିଁଟା କ'ଣ କରୁଛି ବା ଦିନଯାକ ?

ମୁଁ ପଚାରିବି—ଅଇ, ଗୋଡ଼-ଆଣ୍ଠୁ ଟୋପାଳେଇ ହଉଚି । ତେଲ ମାଲିସି କରିଦେବି ?

—ବୁଢ଼ାଟା ହେଇଥାରେ ବାପ, କୋଟି ପରମା ହୋଇଥା । କୋଟି ପରମା କହୁ କହୁ ବୁଢ଼ୀମା ନଳି ଗୋଡ଼ ଦି'ଟା ଲମ୍ବେଇ ଦେଇ ଆଖି ବୁଜି ନଣ୍ଡା ମୁଣ୍ଡଟାକୁ ଏକରି ସେକରି ଦୋହଲେଇ କହିଚାଲିବେ—ଆହା ହା, କେତେ ଭାଗ୍ୟ କରିଥିଲିଟି ମୁଁ —କୋଟି ପରମା ହୋଇଥା—ଦେ' ବା ଦେ'—ଏ ନିଆଁ ନଗା ବୁଢ଼ୀ ମୁହଁଟାକୁ ତ ଚେପ ଲଣ୍ଡାଏ ବି କେହି ପିକଉନି—ଆଉ ତୁ ଏକା ସାହା ଆଉଚୁ—ଆହା ହା—

ତାପରେ ଗୁପ୍ ଗୁପ୍ ଅନ୍ଧାର ଆଲୁଅ ଭିତରେ, ଅସନା ଓ ଔଷଧର ଗନ୍ଧ ଘେରି ରହିଥିବା ଗୋଟିଏ ଶେଯ କଡ଼ରେ ବସି; ଦିନ ପରେ ଦିନ, ମାସ ପରେ ମାସ, କେତେ ଅଗଣିତ ସଞ୍ଜ ମୋର ଏହିପରି ବିତିଯାଇଛି ବୁଢ଼ୀମାଙ୍କ ଛିଣ୍ଡି ଯାଇଥିବା ପରି କଣ୍ଠନଳୀ ମଧ୍ୟରୁ ଓଟାରି ହୋଇ ଆସୁଥିବା ନଟବୋଲା ଅସହାୟତାର ଶବ୍ଦ-ଲହରି ଭିତରେ । କଥା କହୁ କହୁ ହଠାତ୍ ଦେଖିଲି ବୁଢ଼ୀମା ଶୁନ ପଡ଼ିଗଲେ, ଯେମିତି ଅତୀତର ଗଭୀର ସମୁଦ୍ର ଭିତରକୁ ବୁଡ଼ମାରିଲେ ଆଉ ତା'ପରେ କେତେ ଖେଣ୍ଟ ଖେଣ୍ଟ ସ୍ମୃତିର ଶାମୁକା ଧାଉଁଟି ଆଣିଲେ—ତୋ' ଜେଜେ, ହୁନେଇଲୁ, ତୋ' ଜେଜେ ତ କଲିକତାରେ କାମ କରୁଥାଏ, ଘୋଡ଼ କଲରେ, ପହିଲି ଥର ଅଇଲାବେଳେ ଗୋଟାଏ ଶାଢ଼ୀ ଆଣିଲେ—ସେ କ'ଣ କହିବିରେ ପୁଅ—ଏତେ ଓସାର ଧଡ଼ି—ନାଲି ଟହ ଟହ ଦିଶୁଥାଏ ସେ—ଏଇମିତି କେବେ ସ୍ମୃତିର କେତେ ଖେଣ୍ଟ ଖେଣ୍ଟ ଚିତ୍ର ବୁଢ଼ୀମାଙ୍କ ଛିଣ୍ଡା କଣ୍ଠନଳୀରୁ ବାହାରି ଆସି ଗୁପ୍ ଗୁପ୍ ଅନ୍ଧାର ଭିତରେ ମୋ' ଆଖି ଆଗରେ ଆଙ୍କି ହୋଇଯାଏ, କେତେ ଚିତ୍ର—ଜେଜେଙ୍କ ଘର, ବାପାଙ୍କ ଘର, ଶାଗ ପଟାଳୀ, ସାରୁ କିଆରୀ, ଗାଈ ଗୁହାଳ, ହାଣ୍ଡି ଶାଳକୁ ଘେରି ଚିତ୍ର ଆଉ ଚିତ୍ର—ବୁଢ଼ୀମା, ନୂଆବୋହୂ, ନଇ ନଇକା ଘରକୁ ପଶୁ ପଶୁ ଆରେ ! ଏ କ'ଣ ହେଲା ! ଘରେ ପଶୁ ନ ପଶୁଣୁ ଚାଲି ବାଜିଲା । ଆଲୋ ବୋହୂ ଝୁଣ୍ଟି ପଡ଼ିଲା।

ଲେ, ଶାଶୁ ସେଇଠି ବସିପଡ଼ି କାନ୍ଦ ଲଗେଇଲେ—ଆ'ଲୋ ମୁଁ କ'ଣ କରିବିନି ଲୋ । କି ଅଲକ୍ଷଣୀଟାକୁ ଘରକୁ ଆଣିଥିଲି ଲୋ । ମୋ କେଉଁଷ ମୁହଁକୁ ନିଆଁ ଲୋ । ଆମେ 'କି ଜାତକ ଯେ ମେଳେଇଲି ଲୋ ଜାଉଁପଣା । ଏତକୁ ସତ ଅଲକ୍ଷଣୀ, ଘର-ବାହାରପୂରୁ ନ ପହୁଞ୍ଚୁ ସିନ୍ଦୂର ପୋଛିଲା, ନାଲି ଧଡ଼ି ଶାଢ଼ୀ ଚୋପାଡ଼ିଲା; ଚପାଖଣ୍ଡୀ ଭୂଇଁରେ ଜାଚ ବାଡ଼େଇଲା, ଆଉ ତା' ପରଠୁଁ ବାସୁରୀ ଦୁହିଁବା, ଶାଗ ପଟାଳୀ କରିବା, ଗାରୁ କିଆରୀରେ ପାଣି ମଡ଼େଇବା, ଧାନ ଉସେଇବା, ଢିଙ୍କି କୁଟିବା, ସେଇଟି ହେଲେଇଲୁ, ପାହାନ୍ତାରୁ ଉଠି ବି ଯେ କାଉ ସ୍ଵର ନ ଥିବ, ଏଇମିତି ତନ ମନ ଖଟି ଖଟି ମନ ହେଲ ଠା'କେ କୋଉଠି ଭୂନଭାଳି ବସି ପଡ଼ିବ ତ, ସେଇଟି ହେଲେଇଲୁ, ଗ୍ରାଠ ଭିତରଟା କେମେତେ ଗୋଟାଏ ହାଉଁ ହାଉଁ ହେଇଯିବ, କ'ଣ କହିବରେ ପୁଅ, ତୋ ବୋଉ ଏ ଘରକୁ ଆସିନା ଦିନ, ବୋହୂ ବନ୍ଧାଣ ଗୀତ ଥାଏ, ଧାପ ଧରି ବନ୍ଦାଉ ବନ୍ଦାଉ କ'ଣ ତ ହେଇଗଲା ଏ ଗ୍ରାଠଟା ଭିତରେ ଯେ ଧାପ ଫିପ ଗଲା ହାତରୁ ଖସି ଆଉ ମୁଁ ମୁଣ୍ଡ କୋଡ଼ି କାନ୍ଦିଲି ଯେ କାନ୍ଦିଲି, କୋହ ଉଠୁଥାଏ ଯେ ଉଠୁଥାଏ । ମନଟା ତ ପଦା ହୁଡ଼େଇ ଫିଟି ଯାଇଥାଏ ଯେ ଯାଇପଡ଼ିଲା ଚିଅ ବୋହୂ ଏ ଚିଙ୍କୁ ଥାଆନ୍ତୁ ମତେ—ନେ' ଅଧା ଧ' ମ, ଆମେ ଅଧା ଧ' ମ । ଆଉ ଅପୁ ନା ମୁଁ ।

ଏତା ଲମ୍ବସରେ କହିଦେଇ ବୁଢ଼ୀମା ଜୋରରେ ନିଃଶ୍ଵାସ ନେବାକୁ ଲାଗିବ । ବୁଢ଼ୀମାଙ୍କ ଜାଅର ଦେହଟା ଚିତ ହୋଇ ରହିଥିବ । ଫାଙ୍କା, ହଳଦିଆ ଆଖି ଦି'ଟା ଘୂରିରହିଥିବ ଶିକାରେ ଝୁଲୁଥିବା ପୁଟୁଣା କଣାକୁ ଆଉ ଘିଅ ଠେକିକୁ ।

ଏଇ ନିଶ୍ଚଳ ସ୍ତବ୍ଧତା କୋଠରୀର ଗ୍ରୁପ୍ ଗ୍ରୁପ୍ ଆଲୁଅରେ ଛମ୍ ଛମ୍ କରିବ । ମୁଁ ଡରିକି ପରି ଡାକିବି—ଆଈ !

ବୁଢ଼ୀମା ମୋ ଆଡ଼େ ମୁହଁ ବୁଲେଇ ଚାହିଁବ । ଆଖି ଦି'ଟା କାଚ ଗୁଣ୍ଡା ପରି ଚକ୍ ଚକ୍ କରୁଥିବେ । କିଛି ଗୋଟାଏ ଖୋଜିଲା ପରି ବୁଢ଼ୀମାଙ୍କ ଲମ୍ବା କଙ୍କାଳ-ହାତଟା ଶେଯ ଉପରେ ଅଣ୍ଡାଳି ଅଣ୍ଡାଳି ହଠାତ୍ ମୋ' ହାତ ଉପରେ ଗୋଟିଏ ଶକ୍ତ ଚାପ ପକେଇବ । ଆଉ ତମ ଧୂଡ଼ୁ ଧୂଡ଼ୁ ଗୋଟିଏ ହାଡ଼ର ଅଣ୍ଡା ସ୍ପର୍ଶରେ ଭୟରେ ମୁଁ ହଠାତ୍ ଆଆଲୋ ବୋଉଲେ ବୋଲି ଚିତ୍କାର କରି ଉଠିଥିଲି ଥରେ ।

ଭ୍ରୁକୁଟି

( ୧ )

ସେଦିନ ରବିବାର, ଓ ଝିପି ଝିପି ବର୍ଷା ପଡୁଥିଲା । ସୁରଥ ଝର୍କା ପାଖରେ ଯାଇ ତା ପଢ଼ା ଟେବୁଲରେ ବସିଲା । ଦୋ’ ମହଲା ଉପରର ଝର୍କାଟି ଖୋଲା ଥିଲା । ଖୋଲା ଝର୍କା ଦେଇ ସୁରଥର ଦୃଷ୍ଟି ପ୍ରସାରି ଗଲା, ପ୍ରଥମେ ଆକାଶକୁ— ଆକାଶ ବୋଲି କହିଲେ ତା’ ଆଖିରେ ପଡ଼ିଲାନି । ଧୂଆଁ ରଙ୍ଗର ବାଦଲ; ବାଦଲ ଓ ତା’ ଉପରେ ବାଦଲ । ବାଦଲର ମେଲା, ଆଉ ତା’ ଭିତରୁ ଧୀର ମନ୍ଥର ଛନ୍ଦରେ ଅବିରତ ଧାରା— ଝମି ଝିମ୍ ଝମି ଝିମ୍ ଝମି ଝିମ୍ ।

ଝଲକାଏ ପାଣି ଓ ପବନ ହଠାତ୍ ଏକା ଲହରରେ ପଶି ଆସି ସୁରଥର କୈଶୋର ମୁହଁ ଉପରେ ଝିରିଝିରିକେଇ ଖେଳିଗଲା । ସୁରଥ ଆଖି ମୁଦି ବସି ରହିଲା କିଛି ସମୟ, ଓ ଆଖି ପତା ଦେଇ ଅଶ୍ରୁ ଝରି ଗଲା । ଆଖି ଖୋଲିଲାବେଳକୁ ରାସ୍ତାର ପାଣି ସୁଅ ଉପରେ ଚବର ଚବର କରି ଆଗେଇ ଆସୁଥିବା ଦୁଇଟି ଗୋରା ପାଦ ଦେଖି ପାରିଲା—ରଙ୍ଗୀନ୍ ଛତା ତଳେ ଯେ କିଏ ଆଗେଇ ଆସୁଛି ? ଇନ୍ଦୁ କି ?

ଆହା ! ଆସନ୍ତା କି ଇନ୍ଦୁ ଏଇ ରବିବାର ବର୍ଷାରେ !

ଇନ୍ଦୁ ଇ ଆସିଲା ।

ତଳ ମହଲରେ ତା’ ସ୍ୱର ଶୁଭୁଛି । ବୋଉକୁ କହୁଛି, ବାପାଙ୍କ ସାର୍ଟ ସିଲେଇ କରିବ ମେସିନ୍‌ରେ ।

ଅର୍ଥାତ୍ ଇନ୍ଦୁ ଏଇ ଘରକୁ ଆସିବ । ଏଇ ଘରକୁ, ସୁରଥ ଯେଉଁ ଘରେ ବସି ରହିଛି ଖୋଲା ଝର୍କା ପାଖରେ ଝିରି ଝିରି ବର୍ଷାକୁ ଆଉଜି, ସେଇ ଘରକୁ ଇନ୍ଦୁ ଆସିବ । ସୁରଥ ଯେଉଁଠି ବସି ରହିଛି ସେଠାରୁ ମାତ୍ର ଦୁଇ ହାତ ଦୂରରେ ଉଷା ସିଲେଇ ମେସିନ୍‌ଟି ଅଛି, ସୁରଥର ଡାହାଣ କରକୁ, ମେସିନ୍‌ର ଟୁଲ୍ ଟେ ତଳେ, ଅର୍ଥାତ୍ ଇନ୍ଦୁ ବସିବ ସୁରଥକୁ ମୁହଁ କରି । ବର୍ଷାରେ ପଖାଳି ହୋଇଥିବା ସୁରଥର ଆଖି ଇନ୍ଦୁ ଆଖି ଉପରେ ଭାସି ବୁଲିବ ।

ଝୁଣ୍ଟି ଝୁଣ୍ଟି ବୁଲି ଆସିବ ତା’ର ଲମ୍ବା ଲମ୍ବା ଅଙ୍ଗୁଳିର ଇତସ୍ତତଃ ବକ୍ଷିପ୍ତ କାରୁକାର୍ଯ୍ୟ ଉପରେ । ଇନ୍ଦୁ ତା’ ନଖରେ ନେଲ୍‌ପଲିସ୍ ଲଗାଏ ।

ସିଡ଼ିରେ ପାଦ ଶବ୍ଦ ଶୁଭୁଛି ।

ଇନ୍ଦୁ ଆସୁଚ ?

ସୁରଥ କାନ ଡେରିଲା ।

ପାଦ ଶବ୍ଦ ଆଗେଇ ଆଗେଇ ଆସୁଚି ।

ଇନ୍ଦୁ ଆସୁଚ ।

ଇନ୍ଦୁ ଆସୁଚ !

ଆହା ! ଇନ୍ଦୁ ଆସୁଚ !

ଏଇ ରବିବାର ସକାଳେ 'ଇନ୍ଦୁ ଆସୁଚ !

( ୨ )

ସେଦିନ ରବିବାର, ଓ ସକାଳ ତଥାପି ବୟସ୍କ ହୋଇ ନଥାଏ । ଦୋକାନ ପାଖରେ ପଡ଼ିଥିବା 'ରବିବାର ପ୍ରଜାତନ୍ତ୍ର'ଟି ଆଣି ସୁରଥ ତା ଟେବୁଲ ଉପରେ ବସ୍ତ୍ରାଚ୍ଛାଦିତ ପୁଷ୍ପାଧାର ବସି ରହିଲା । ସୁରଥକୁ ଖୁବ୍ ଭଲ ଲାଗୁଥାଏ । ଖୋଲା ଝରକା-ବାଟେ ସୁରଥ ସକାଳର ଶୋଭା ଦେଖିବାକୁ ଲାଗିଲା । ଆଃ କି ସୁନ୍ଦର ! ସୁନ୍ଦର ପୃଥିବୀ ! ସୁନ୍ଦର ପୃଥିବୀର ଗୋଟିଏ ବଗିଚାରେ ଇନ୍ଦୁ ବସିଚି । ଇନ୍ଦୁ ଘର ସୁରଥର ଘର ପାଖ ନାଳରେ । ଇନ୍ଦୁ କଣ ତାକୁ ଦେଖି ପାରୁଛି ?

ଦେଖନ୍ତା କି ?

ସକାଳ କି ମନୋରମ !

ସୁରଥ 'ରବିବାର ପ୍ରଜାତନ୍ତ୍ର'ଟି ହାତରେ ଧରି ହଲେଇଲା ।

ଇନ୍ଦୁ ହସିଲା । ହାତରେ ଧରିଥିବା ଗୋଟିଏ ଖବର କାଗଜ ସେ ବି ହଲେଇଲା ।

ସେଇଟା କ'ଣ 'ରବିବାର ପ୍ରଜାତନ୍ତ୍ର' ? ଆଜିର ? ଇନ୍ଦୁ ଅକ୍ଷରେ ପଢ଼ି ସାରିଚ ?

ଇନ୍ଦୁ ତେବେ ତା' ଗପଟି ଦେଖିଛି ! ଏଣିକି କଣ ତାକୁ ପଚାରିବ ?

ଖାଇବାବେଳେ, ଖାଇସାରି, ସୁରଥ ଗଲା ଇନ୍ଦୁ ଘରକୁ—ବୋଉ ମୁଁ ଯାଉଛି ସନତ୍‌ଙ୍କ ଘରକୁ । ସନତ୍ ଇନ୍ଦୁର ଭାଇ । ସୁରଥ ପାଖରେ ପଢ଼େ ଓ ଦୁହେଁ ଗରମ ଦିନ ଖରାବେଳଯାକ ବଗିଚାରେ ବସି ବସି କ୍ୟାରମ୍ ଖେଳନ୍ତି ।

ଇନ୍ଦୁ କବାଟ ଖୋଲିଲା ।

ସନତ୍ କାହିଁ ?

ଏଇ, ସୁରଭାଇ. ତମ ଗପ ଛପା ହୋଇଛି ଖବର କାଗଜରେ ! ସତରେ ତମେ ଲେଖିଛ ? କେବେ ଲେଖିଥିଲ ? କେବେ ପଠେଇଲ ? ମତେ ତ କିଛି କହିନ ?

ସୁରଥ ମଗଣରେ କ୍ୟାରମ୍ ବୋର୍ଡଟି ନେଇ ପାହାଚରେ ଓହ୍ଲେଇ ଆସିଲା । ପଛେ ପଛେ ଇନ୍ଦୁ । ପ୍ରଶ୍ନ ପରେ ପ୍ରଶ୍ନ, ଖୁସି, ଆହ୍ଲାଦ, ଆନନ୍ଦ ବାଣ୍ଟି ବାଣ୍ଟି ଇନ୍ଦୁ ସୁରଥ ପଛେ ପଛେ ଆସିଲା, ବଗିଚା ଭିତରକୁ । ଇନ୍ଦୁଙ୍କ ବଗିଚାରେ ନାନା କିସମର ଗଛ — ଆମ୍ବ, ପଣସ, ପିଜୁଳି, ଆଉ ଜାମ୍ବୁଲ୍ ଗଛର ଛାଇ ତଳେ ସତ-ରଞ୍ଜି ବିଛେଇ ସୁରଥ କ୍ୟାରମ୍ ବୋର୍ଡଟି ଠିକ୍ ଭାବେ ରଖିଲା । କ୍ୟାରମ୍—ଗୋଟି ଥିବା ଟିଣ ଡବାଟି ଇନ୍ଦୁ ହାତରେ ନେଇ ଛିଡ଼ା ହୋଇ ରହିଲା—କ'ଣ ସ ? ମୁଁ ଏତେ କଥା ପଚାରୁଛି କିଛି କହୁନ ?

ସୁରଥ କହିଲା—ଥାକ୍, ପାଟି କରନା—ସନତ୍‌କୁ ଡାକିବା ଭୁଲିଗଲୁ !

ନାହିଁ ମୁଁ ଯିବିନି ।

ଗୋଟି ଡବାଟିକୁ କାଖରେ ଧରି ଇନ୍ଦୁ କେତୋଟି ମୁହୂର୍ତ୍ତ ଶକ୍ତ ଭାବରେ ଛିଡ଼ା ହୋଇ ରହିଲା ଓ ତା'ପରେ କହିଲା—ଓଃ ! ଯୋଉ ତ ଗୋଟାଏ ଗପ ! ହୁଁଃ । ତା'ପରେ ହଠାତ୍ ଗୋଟି-ଡବାରେ ଝଡ଼ର୍ ଝଡ଼ର୍ ଶବ୍ଦ କରି ଏକା-ଦୌଡ଼ରେ ଘର ଭିତରକୁ ଚାଲିଗଲା । ପକ୍ଷୀଟିଏ ସେଇ ଶବ୍ଦରେ ଗଛ ଉପରୁ ଉଡ଼ିଗଲା ।

ସୁରଥ ଉପରକୁ ଚାହିଁଲା । ଖରା ଆଉ ଛାଇର ଜାଲ ଭିତରେ ଜାମ୍ବୁଲ୍ ଗଛର ପତ୍ର ସବୁ ଧୀର ପବନରେ ଦୋହଲୁଥିଲେ ।

( ୩ )

ଗୋଟିଏ ଶୀତର ଦି'ପହରେ କଲେଜରେ ଧର୍ମଘଟ ଚାଲିଥାଏ ଓ ଇନ୍ଦୁ, ସୁରଥ ଏବଂ ଅର୍ଚ୍ଚନା ଇନ୍ଦୁଙ୍କ ବଗିଚାରେ କ୍ୟାରମ୍ ବୋର୍ଡ ସାମନାରେ ବସିଥାନ୍ତି । ଅର୍ଚ୍ଚନା ସୁରଥମାନଙ୍କ ସାଙ୍ଗରେ ପଢ଼େ ଓ ସନତ୍‌କୁ ଭଲପାଏ ।

ଅର୍ଚ୍ଚନା ଆଇ.ଏ.ଏସ୍ ଅଫିସରର ଝିଅ, ସେ କନ୍‌ଭେଣ୍ଟରେ ପଢ଼ିଛି ତେଣୁ ପ୍ରାୟଶଃ ପୂରା ଓଡ଼ିଆରେ କଥାବାର୍ତ୍ତା କରେ ନାହିଁ; ଏବଂ କଥା କଥାକେ 'ଓ୍ୱାଓ' କରି ଚିତ୍କାର କରି ଉଠେ । ଅର୍ଚ୍ଚନା ବେଳେ ବେଳେ କଲେଜ ରାଜନୀତିରେ ଭାଗନିଏ । ଜ୍ୟୋତିବସୁ ଓ ନାମ୍ବୁଦ୍ରିପାଦଙ୍କୁ ବହୁତ ପ୍ରଶଂସା କରେ ଓ ଶବ୍ଦାରେ

ବସି ସନତ୍ ସାଙ୍ଗରେ ମ୍ୟାଟିନ-ଶୋ ଯାଏ । ଅର୍ଚ୍ଚନା ଇନ୍ଦୁ ପାଖକୁ ଆସିଥିଲା କହିବା ପାଇଁ ଯେ ତା' ବାପା ଥାନାକୁ ଯାଇଥିଲେ ସନତ୍‌କୁ ମୁକୁଳାଇ ଆଣିବା ପାଇଁ; କିନ୍ତୁ ସନତ୍ 'ଆଉଟ୍‌ରାଇଟ୍ ରେଫ୍ୟୁଜ୍ କରଦେଲା ବଣ୍ଡ୍ ସାଇନ୍ କରିବାକୁ ବୋଲି', କହିଲା କୁଆଡ଼େ ଯେ ସବୁ ଛାତ୍ର ଝିଅମାନଙ୍କୁ ରିଲିଜ୍ ନ କଲା ଯାଏଁ ସେ ଜେଲରୁ ବାହାରି ଆସି ପାରିବନି । Really bravo !

ଅର୍ଚ୍ଚନା ଅନର୍ଗଳ କହି ଚାଲିଥିବା ବେଳେ ସୁରଥ ଚୁପ୍‌ଚାପ୍ ବସି କ୍ୟାରମ୍‌ରେ ଖଟ୍ ଖଟ୍ କରି ଚାଲିଥାଏ । ଇନ୍ଦୁ ଅର୍ଚ୍ଚନା ମୁହଁକୁ ଚାହିଁ ସବୁ କଥା ଶୁଣି ଯାଉଥିଲା । ହଠାତ୍ କଥା ମଝିରେ ଅଟକିଯାଇ ଅର୍ଚ୍ଚନା ଚେୟାର ଉପରେ ବସି ପଡ଼ିଲା ଓ ସୁରଥକୁ ଲକ୍ଷକରି କହିଲା—ସୁରଥ୍, I really wonder, ତମେ କେମିତି ଏଠି ଆରାମରେ ବସି କ୍ୟାରମ୍ ପିଟୁଛ ?

ସୁରଥ କହିଲା—ମୁଁ ତ କହୁଛୁ, ମୋ'ର ସମର୍ଥନ ନାହିଁ ।

ଅର୍ଚ୍ଚନା କହିଲା—ତୁମର କରେଜ୍ ନାହିଁ ।

ସୁରଥ କହିଲା—ବର୍ତ୍ତମାନ ତ କଲେଜ ବନ୍ଦ କରି ଦେଇଛନ୍ତି; କିନ୍ତୁ ଷ୍ଟ୍ରାଇକ୍ ଆରମ୍ଭ ଦିନ ମୁଁ ଏକା କ୍ଲାସକୁ ଯାଇଥିଲି । କେମିତି ଯାଇଥିଲି ଜାଣିଛ ?

ଉଭୟେ ଅର୍ଚ୍ଚନା ଓ ଇନ୍ଦୁ ସୁରଥ ମୁହଁକୁ ଚାହିଁଲେ ।

ସୁରଥ କହିଲା—ଗେଟ୍ ସାମ୍ନାରେ ସନତ୍ ଶୋଇଥାଏ । ମୁଁ ତ ଛାତି ଉପରେ ଚଢ଼ି ଯାଇଥିଲି ।

ଓ୍ୱାଓ—ୟୁ ବ୍ରୁଟ୍ !

ଇନ୍ଦୁ ନୂଆ ନୂଆ ଶାଢ଼ୀ ପିନ୍ଧୁଛି ଓ 'ବ୍ରୁଟ୍'ର ଅର୍ଥ ନ ବୁଝି ପାରି ବଡ଼ ବଡ଼ ଆଖିରେ ଥରେ ଅର୍ଚ୍ଚନା ମୁହଁକୁ ଓ ଥରେ ସୁରଥ ମୁହଁକୁ ଚାହିଁବାକୁ ଲାଗିଲା ।

ଅର୍ଚ୍ଚନା ଦୁଃଖରେ ଭାଙ୍ଗିପଡ଼ି କହିଲା—ସୁରଥ୍, ତୁମେ brilliant student, ମୁଁ ମାନୁଚି ତୁମେ ଦିନେ ଆଇ. ଏ. ଏସ୍. ପାଇବ.....

ସୁରଥ ବାଧାଦେଇ କହିଲା—ତମ ବାପା ଆଇ. ଏ. ଏସ୍.

ଅର୍ଚ୍ଚନା କହିଲା—ଇୟେସ୍, ସେଇଥିପାଇଁ ମୁଁ କହୁଛି । ମୁଁ ଡେଲି ମୋ ଡ୍ୟାଡ଼ିଙ୍କୁ ଆଖି ଆଗରେ ଦେଖୁଛି ।

ସୁରଥ କହିଲା—ଅର୍ଚ୍ଚନା, ମୁଁ ତୁମ ପାଦ-ପଦ୍ମରେ ଦୁଇଟି ଫୁଲ ରଖିବାକୁ ଚାହେଁ । ଅର୍ଚ୍ଚନା ରାଗିଯାଇ କହିଲା ଇସ୍, ତୁମ ଦେହତ କଥା କହିବାକୁ ମତେ ଘୃଣା ଲାଗୁଛି । କହି କହି ଅର୍ଚ୍ଚନା ତମ୍‌ତମ କରି ଚାଲିଗଲା ।

ଇନ୍ଦୁ ବଳବଳ ଆଖିରେ ଅର୍ଚ୍ଚନା ଯିବା ଦାଟକୁ ଗ୍ଧିଁ ରହିଲା ଓ ତା'ପରେ ସୁରଥ ଆଡ଼କୁ ବୁଲିପଡ଼ି ଆଭୂର ସ୍ୱରେ କହିଲା—ସୁରଭାଇ, ତମେ କାହିଁକି ଏମିତି କଲ ?

ସୁରଥ ଇନ୍ଦୁ କଥାକୁ ବୁଝିପାରିଲା ନାହିଁ । ତାକୁ ପଚାରିଲା—କ'ଣ କଲି ମୁଁ ?

ଇନ୍ଦୁ କହିଲା—ତମେ, ତମେ ଭାଇଙ୍କ ଗୁଡ଼ ଉପରେ ଚଢ଼ି ଗ୍ଲିଗଲ ?

ସୁରଥ କିଛି ସମୟ ମଉନ ରହିଲା । ତା'ପରେ କହିଲା—ଇନ୍ଦୁ, ମତେ ଭୁଲ ବୁଝନ୍ତୁନ । ୭

ଇନ୍ଦୁ କିନ୍ତୁ କିଛି ବୁଝିଲା ନାହିଁ । କାନ୍ଦ କାନ୍ଦ ହୋଇ କହିଲା—ତମେ ଏମିତିକା କ'ଣ କି ? ଭାଇଙ୍କ ଗୁଡ଼ ଉପରେ ଚଢ଼ି ଗ୍ଲିଯିବ—! ଇନ୍ଦୁ ଆଉ କିଛି କହି ପାରିଲା ନାହିଁ ।

ସୁରଥ ଏଥର ଅନେକ ସମୟ ପର୍ଯ୍ୟନ୍ତ ମଉନ ରହିଲା । ତା'ପରେ କହିଲା—ଇନ୍ଦୁ, ମୁଁ ଯୁକ୍ତି କହୁଛି, ମୁଁ ଭୁଲ୍ କରିନ । ଷ୍ଟ୍ରାଇକ୍‌ରେ କୌଣସି ଦୋଷ ନାହିଁ । ତେଣୁ ତା'ର ପ୍ରତିବାଦ କରିବା ପାଇଁ ମତେ ଯାହା କରିବାକୁ ପଡ଼ିଲା, ମୁଁ ବାଧ୍ୟ ହୋଇ ତା' କଲି । ମୁଁ ଯାହା ବିଶ୍ୱାସ କରିବ, ତା' କରିବ; ଯାହା ବିଶ୍ୱାସ କରିବନ, ତା ଆଦୌ କରିବନ । ମୋ ବିଶ୍ୱାସରେ ଯଦି ଦରକାର ପଡ଼ିବ, ସନତ୍ କାହିଁକି, ମୁଁ ତୋ ଉପରେ ବି' ମାଡ଼ି ଗ୍ଲିଯିବି ।

ସୁରଭାଇ ! ଇନ୍ଦୁ ହଠାତ୍ ଚିତ୍କାର କରି ଉଠିଲା ।

ସୁରଥ ଆଶ୍ଚର୍ଯ୍ୟ ହୋଇଗଲା ଓ ପଚାରିଲା—କ'ଣ ହେଲା ?

ନୂଆ ନୂଆ ପିନ୍ଧିଥିବା ଶାଢ଼ୀରେ ଛନ୍ଦୁଣି ମନ୍ଦୁଣି ହୋଇ ଇନ୍ଦୁ ହସହସା ମୁହଁ ତଳକୁ ନୁଆଁଇ ନେଲା । କହିଲା—ନାଇଁ, କିଛି ନାଇଁ ।

ପରଦିନ ସକାଳେ ସନତ୍ ମାଗିନେଇଥିବା ଗୋଟିଏ ବହି ଇନ୍ଦୁ ଆଣି ଫେରାଇ ଦେଇଗଲା ସୁରଥକୁ, ଓ ସେଦିନ ସନ୍ଧ୍ୟାବେଳେ ଶରତର ଜହ୍ନ ଆକାଶରେ ଉଇଁ ଆସୁଥିବା ବେଳେ ସୁରଥ ବହିଟା ଖୋଲି ପଢ଼ିବାକୁ ବସିଲା ଓ ଇନ୍ଦୁ ଦେଇ ଯାଇଥିବା ବହି ଭିତରୁ ଗୋଟିଏ ଚିଠି ଆବିଷ୍କାର କଲା—

ସୁରଭାଇ, ମୁଁ ତୁମକୁ ଭଲପାଏ ।

( ୪ )

ଇନ୍ଦୁ ସୁରଥକୁ ଭଲ ପାଇବା ପରଠାରୁ ସ୍ୱା ଭିତରେ ଇନ୍ଦୁ, ସୁରଥ, ସନତ୍, ଇନ୍ଦୁଙ୍କ ଘର, ସୁରଥଙ୍କ ଘର ଓ ଆହୁରି ଅନେକ କିଛିର ରଙ୍ଗ ଓ ଚରିତ୍ରରେ ନାନା ପରିବର୍ତ୍ତନ ଘଟି ଯାଇଛି । ଇନ୍ଦୁ ଶାଢ଼ୀ ପିନ୍ଧି ସ୍କୁଲକୁ ଗଲାବେଳେ ଆଉ ଛନ୍ଦି ଯାଏନି । ତା' ପିଠି ଉପରେ ଆଉ ଲମ୍ବ ବେଣୀ ଝୁଲେନି । ସୁରଥ ଆଗରେ ପଡ଼ିଗଲେ ପଚାରିଦିଏ—କ'ଣ ହେଲା ?

କେଉଁ କଥା ?

ଇଣ୍ଟରଭ୍ୟୁ ଦବାକୁ ଯାଇଥିଲ ପରା ?

କୋଉ ଇଣ୍ଟରଭ୍ୟୁ ? କେତେ ତ ଦେଉଛି !

କୋଉଟା ହେଲା ?

କୋଉଟି ହେଲାନି ।

ଭାଇ କେମିତି ବଢ଼ିଆ ଚାକିରିଟେ ପାଇଗଲେ ।

ଘରରେ ଖାଇଲାବେଳେ ସୁରଥର ବୋଉ କହିଲା— ଇନ୍ଦୁ ଖବର ଶୁଣିକି ହୋଇଗଲା । ସୁରଥର ଅବସରପ୍ରାପ୍ତ ବାପା ତାଙ୍କ ହାପୁଡ଼ିରୁ କହିଲେ—ହଁ କର୍ପୋରେସନ ଚାକିରିରେ ଭଲ ଦରମା; ପାଇଗଲା, ଭଲ ହେଲା ।

ସୁରଥ କହିଲା—ପାଇଗଲା ନୁହେଁ, ଯୋଗାଡ଼ କଲା ।

ସୁରଥ ବୋଉ କହିଲେ—ହଁ ହେଲା, ତୁ କଲୁନା ?

ସୁରଥ କହିଲା—ମୁଁ ସେସବୁ କରି ପାରିବିନି ।

ସୁରଥ ବୋଉ କହିଲେ—ସନତ୍ କେମିତି ପାରିଲା ?

ସୁରଥ କହିଲା—ସନତ୍ ରାଜନୀତି କରୁଥିଲା ।

ସୁରଥ ବୋଉ କହିଲେ—ତୁ କଲୁନା ?

ସୁରଥ କହିଲା—ସନତ୍ ଛାତ୍ରନେତା ଥିଲାବେଳେ ତା' ବାପା ତ ତାଙ୍କୁ ନିତି ଗାଳି ଦେଉଥିଲେ—ସୁରଥ ଭଳି ଫିଲଟିର କେମିତି ସାଙ୍ଗ ହୋଇ ପାରିବୁ ବୋଲି କହୁଥିଲେ । ଆଉ ତୁମେ ସବୁ ସେତେବେଳେ ଗର୍ବରେ···

ହଠାତ୍ ସୁରଥର ବାପାଙ୍କ ତଣ୍ଟିରେ କ'ଣ ଲାଗିଗଲା । ସୁରଥ ବୋଉ ବ୍ୟସ୍ତ ହୋଇ ପଡ଼ିଲେ—ନିଅ ନିଅ, ପାଣି ପିଅ—

( ୫ )

ଝର୍କା ଖୋଲିଦେଲେ ସୁରଥର ପୁଣି ସେହି ପୁରୁଣା ପୃଥିବୀ ସହିତ ଭେଟ ହୁଏ ।

ପୃଥିବୀ ଆଦୌ ବଦଳି ନାହିଁ । ଆକାଶ ଠିକ୍ ସେହିପରି ନଇଁ ଆସିଛି ଇନ୍ଦୁଙ୍କ ଘର ବଗିଚାକୁ । ଜାମ୍ବୁଲ୍ ଗଛର ପତ୍ର-ଗହଳ ଭିତରକୁ । ଇନ୍ଦୁ ଚାଲିଗଲା ପରେ ବି ଠିକ୍ ସେହିପରି କାଠଚମ୍ପା ଗଛଟି ଫୁଲ-ଭାରରେ ନଇଁ ପଡ଼ିଛି, କାଠଚମ୍ପା ଗଛ ତଳେ ଗେଟ୍ ଖୋଲି ଇନ୍ଦୁ ବାହାରି ଆସୁଥିଲା—ଏବେ ସେ କଣ ବାହାରୁଛି କାଠଚମ୍ପା ଗେଟ୍ ତଳୁ ?

ସନତ୍ ?

ସନତ୍ ଆସିଲା । ସୁର ଅଛୁ କିରେ ?

ହଁ, ଆ' ଭିତରକୁ ଆ ।

ସନତ୍ ଘର ଭିତରକୁ ଆସି ସୋଫା ଉପରେ ଗୋଟିଏ ପଣ୍ଡିତଙ୍କ ଭଳି ପଣ ବଢେଇ ହୋଇ ବସିଲା । କହିଲା—ଶୁଣ, ମୋ ହାତରେ ସମସ୍ତ ନାହିଁ ଆଦୌ, ତୁ ଆଜି ଯିବୁ ଅର୍ଚ୍ଚନା ପାଖକୁ, ଅର୍ଚ୍ଚନା ବର ରମେଶ ସାମଲ୍ ଆଇ.ଏ.ଏସ୍; ତୁ ଚହ୍ନିଥିବୁ ନିଶ୍ଚୟ, ଗୁଡ଼୍, ତୋ' ଚହ୍ନିବା ଦରକାର ନାହିଁ—ଅର୍ଚ୍ଚନାକୁ ମୁଁ **already** ଫୋନ କରି କହିଛି ରମେଶ ବାବୁଙ୍କ ହାତରେ ଗୋଟିଏ ଭଲ ଚାକିରି ଅଛି, ଅର୍ଚ୍ଚନା ତୋ' ପାଇଁ କହୁଥିବ—

ସୁ' ମଗଉଛୁ, ବୁଝ

ନାଇ, ନାଇ, ସୁ' ଫା' ମୋର ଦରକାର ନାହିଁ ମୋ' ହାତରେ ସମସ୍ତ ନାହିଁ ମୋଟେ ତୁ ବ୍ୟସ୍ତ ହଅନା, ଶୁଣ୍—ତୁ ଅର୍ଚ୍ଚନା ଘର ଦେଖିଛୁ ତ, ଆଜି ସେମିତିକା ହେଲେ—

ସନତ !

ସନତ୍ ରେକିଗଲା । ରେକିଯାଇ ସୁରଥକୁ ଚାହିଁଲା । ସୁରଥ କହିଲା—ତୋର ବୋଧହୁଏ ମନେ ନାହିଁ କଲେଜରେ

ଓଃ, ସନତ୍ ହାତ ଛୁଞ୍ଚି କହିଲା—ମା'ର୍ ଗୁଲି ତୋ' କଲେଜକୁ ।

ସୁରଥ କହିଲା—କିନ୍ତୁ ଅର୍ଚ୍ଚନା କଥା ପଡ଼ିଲେ ମୋ'ର ଜ୍ୟୋତିବସୁ, ନାମ୍ବୁଦ୍ରିପାଦଙ୍କୁ ମନେ ପଡ଼େ ଆଉ ତା' ସାଙ୍ଗରେ କଲେଜର ସେଇ ଦିନଟି ମନେ ପଡ଼େ ।

ସୁନନ୍ଦ ଉତ୍ସୁକ ନେତ୍ରରେ ପଚାରିଲା—କୋଉ ଦିନ ?

ସୁରଥ କହିଲା—କଲେଜର ପ୍ରବନ୍ଧ ପ୍ରତିଯୋଗିତା ଦିନ କଥା—ମନେ ନାହିଁ ତୋର ? ସେଇ ବର୍ଷ, ଯୋଉଥର ଗାନ୍ଧୀ ଶତବାର୍ଷିକୀ ପାଳନ କରା ହେଉ-ଥାଏ, କଲେଜ୍ ମ୍ୟାଗାଜିନ୍ ବାହାରିଲା ଗାନ୍ଧି ବିଶେଷାଙ୍କ, କଲେଜ ଡିବେଟ୍‌ର ବିଷୟବସ୍ତୁ ଗାନ୍ଧି, କଲେଜ ଡ୍ରାମା ହେଲା 'ବାପୁ' ତୋର ମନେ ନାହିଁ ? ମୁଁ କଲେଜ ମ୍ୟାଗାଜିନରେ ଲେଖା ଦେଲିନି । ଡିବେଟ୍‌କୁ ଗଲିନି, ଆଉ ପ୍ରବନ୍ଧ ପ୍ରତିଯୋଗିତା ଦିନ ବିଷୟ ଯେତେବେଳେ ଘୋଷଣା କରାଗଲା The Social Philosophy of Gandhi ମୁଁ ହଲରୁ ଉଠି ଚାଲି ଆସିଲି, ଆଉ ସେଇ-ଥରକ ଅର୍ଚ୍ଚନା ଫାଷ୍ଟ ହେଲା । ଅର୍ଚ୍ଚନା ମତେ ପଚାରିଲା—

ତୁମେ ହଲ୍‌ରୁ ଉଠି ଆସିଲ ଯେ ? ମୁଁ କହିଲି—ମୁଁ ଗାନ୍ଧିବାଦରେ ବିଶ୍ୱାସ କରେନି । ଅର୍ଚ୍ଚନା କହିଲା—So what ? ମୁଁ କହିଲି—I am Surat. ଅର୍ଚ୍ଚନା କହିଲା—ସିଲି !

ସୁନନ୍ଦ କହିଲା—ମୁଁ ଆଜିଥରେ କହୁଛି, ଶୁଣ,—ମୂର୍ଖ !

(୬)

ଇନ୍ଦୁ ବାହାଘର ଦିନ ହଠାତ୍ ଅଦିନରେ ବର୍ଷା ହୋଇଗଲା । ତା'ପରେ ଚାରିମାସ ଆଉ ବର୍ଷା ନ ଥିଲା । ଚାରିମାସ ଇନ୍ଦୁ ଏଠାରେ ନ ଥିଲା । ସୁରଥର ଖୋଲା ଝର୍କା ବାଟେ ପୁଣି ଝିରି ଝିରି ହୋଇ ବର୍ଷା ଝରିପଡ଼ିଲା । ବର୍ଷା ! ବର୍ଷା ! ଆଃ ବର୍ଷା କି ଭଲ ଲାଗୁଛି ।

ଚାରି ମାସ ପରେ ଇନ୍ଦୁ ଫେରି ଆସିଛି !
ବର୍ଷା ଆସିଛି !
ବର୍ଷା !
ଚାରିମାସ ପରେ ପୁଣି ବର୍ଷା !
ବର୍ଷା ଝିରି ଝିରି ହୋଇ ଝରି ପଡ଼ୁଛି !
ଇନ୍ଦୁ ଆସୁଛି ।
ଥପ୍ ଥପ୍ ପାଦ ଶବ୍ଦ ଶୁଭୁଛି ସିଡ଼ିରେ ।
ଇନ୍ଦୁ ସିଡ଼ି ଚଢ଼ି ଚଢ଼ି ଉପରକୁ ଆସୁଛି ।
ଇନ୍ଦୁ ଆସୁଛି !

ଆଃ

ଇନ୍ଦୁ !

ଇନ୍ଦୁ !

ଇନ୍ଦୁ କହୁଛି ବୋଉକୁ ।

ବୋଉ କହୁଛି ଇନ୍ଦୁକୁ ।

ଇନ୍ଦୁ ଆଉ ବୋଉ କଥା କହୁ କହୁ ଉପରକୁ ଆସୁଛନ୍ତି ।

ବର୍ଷା ଝରି ଯାଉଚି ଝର୍ । ସେପାଖେ, ଝିରି ଝିରି, ଝିରି ଝିରି ।

ଇନ୍ଦୁ ଆସୁଚି ।

ଆହା ! ବହୁଦିନ ପରେ ପୁଣି ଇନ୍ଦୁ ଆସୁଚି ଏଇ ବର୍ଷାରେ !

ଇନ୍ଦୁ କହୁଛି—ଆଉ, ସୁର ଭାଇଙ୍କ ଗୃକଶ ହେଲା ?

ବୋଉ କହୁଛି—ନାଇମ, ହେଇନ ।

ଇନ୍ଦୁ କହୁଛି—ହବନ ବ, କହ୍ନାଉ ନକମା !

(୧ ୯।୮୦)

# ବିଲମ୍ବିତ ଶୋକ

ମୁଁ କଲେଜରେ ପଢ଼ୁଥିବା ବେଳେ ଆମ କଲେଜ ହତା ଭିତରେ ଯୌବନର ଇନ୍ଦ୍ରଧନୁର ବର୍ଣ୍ଣଚ୍ଛଟା ପରି କୃଷ୍ଣଚୂଡ଼ା ଗଛରେ ଫୁଲ ସବୁ ଲଦି ହୋଇଯାଉଥିଲା । ସେ ବର୍ଷ ଏହିପରି ଏକ ଋତୁରେ, ଅର୍ଥାତ୍ ଏପ୍ରିଲ୍ ମାସରେ ଆମ କଲେଜର ମିସ୍ ରେବା ଦାସ ଆତ୍ମହତ୍ୟା କରିଥିଲା । ମିସ୍ ରେବା ଦାସଙ୍କୁ ମୁଁ ଚିହ୍ନି ନ ଥିଲି । ପରେ ଶୁଣିଲି ଯେ ସେ ଦେଖିବାକୁ ସୁନ୍ଦରୀ ଥିଲା ଓ ବିଶ୍ୱବିଦ୍ୟାଳୟ ସ୍ତରର କ୍ରୀଡ଼ା ପ୍ରତିଯୋଗିତାରେ କୃତିତ୍ୱ ଅର୍ଜନ କରିଥିଲା ଏବଂ କେବେକେବେ ଭଲ କବିତା ମଧ୍ୟ ଲେଖୁଥିଲା । ବିଶ୍ୱବିଦ୍ୟାଳୟ ସ୍ତରରେ କୃତିତ୍ୱ ପ୍ରଦର୍ଶନ କରିବା ଅଥବା କବିତା ଲେଖିବା—ଦୁଇଟିରୁ କୌଣସିଥିରେ ମୋର ପ୍ରବେଶ ନ ଥିବାରୁ ବୋଧହୁଏ ମିସ୍ ରେବା ଦାସଙ୍କୁ ଚିହ୍ନିବାର ସୌଭାଗ୍ୟ ମୋର ହୋଇ ନ ଥିଲା । ତେଣୁ ମିସ୍ ରେବା ଦାସଙ୍କ ଦୁର୍ଭାଗ୍ୟଜନକ ମୃତ୍ୟୁରେ କଲେଜରେ ଯେଉଁ ଶୋକ ସଭା ହେଲା, ସେ ସଭାରେ ପଛ ବେଞ୍ଚରେ ବସି ବସି ମୁଁ ଗନ୍ଧବଙ୍କୁ କହୁଥିଲି—ଆହା ! ଆଗରୁ ଜାଣିଥିଲେ ମୁଁ ଗୋଟାଏ ଗ୍ଲିସେରିନ୍ ଶିଶି କିଣି ଆଣି ଦି' ପଦ ଶୋକ ପ୍ରକାଶ କରିଥାନ୍ତି ! ଗନ୍ଧବ ମତେ ଚିମୁଟି ଦେଇଥିଲା । ସେଇ ଗନ୍ଧବ ସହିତ ହଠାତ୍ କଲେଜ ଜୀବନର ବହୁ ବର୍ଷ ପରେ ଦିନେ ଅଚାନକ ଦେଖା ହୋଇଗଲା ଅନ୍ୟ ଗୋଟିଏ ସହରର ରାସ୍ତା ଉପରେ । ଗନ୍ଧବ ମତେ କହିଥିଲା—ଯିବୁ ଆମ ଘରକୁ ? ମୁଁ କହିଲି—ନିଶ୍ଚୟ । କିନ୍ତୁ ତା'ପରେ ଆଉ ଯାଇନି । ଦିନେ ଗନ୍ଧବ ରାସ୍ତା ଉପରୁ ମତେ ଟାଣି ଟାଣି ନେଇଗଲା ତା' ଘରକୁ । ଘରେ ପହଞ୍ଚି କଲିଂ ବେଲ୍ ଚିପିବାରୁ ଯିଏ ଆସି ଦୁଆର ଖୋଲିଲେ ତାଙ୍କୁ ଦେଖି ମୁଁ ହତବାକ୍ ହୋଇଗଲି—ସୁଚରିତା ! ଆଶ୍ଚର୍ଯ୍ୟ ! ମୁଁ ଆଦୌ ବିଶ୍ୱାସ କରିପାରୁ ନ ଥିଲି ଯେ ଗନ୍ଧବ ସୁଚରିତାଙ୍କୁ ବାହା ହୋଇଛି । ବା ଅନ୍ୟ ପକ୍ଷରେ କହିଲେ, ସୁଚରିତା ଗନ୍ଧବଙ୍କୁ ବାହା ହୋଇଛି ! ସୁଚରିତା ଯଦିଓ ଆମ କଲେଜରେ ପଢ଼ୁ ନ ଥିଲା, ତଥାପି ସୁଚରିତାକୁ ମୁଁ ଜାଣେ । ଦୂରରୁ ବହୁତ ଥର ଦେଖିଛି । ସୁଚରିତା ପଢ଼ୁଥିଲା ମହିଳା କଲେଜରେ । ମହିଳା କଲେଜ ଛୁଟିପରେ ପ୍ରାୟ ପ୍ରତିଦିନ ସୁଚରିତାକୁ ଦେଖିଛି ଅମରେନ୍ଦ୍ର ସାଥିରେ । କେତେ-ବେଳେ ଚାଲି ଚାଲି ନଟେଶ୍ୱଲା ରାସ୍ତାରେ ତ କେତେବେଳେ ରିକ୍ସାରେ, ବା କେବେକେବେ ମ୍ୟାଟିନି ଶୋ' ପରେ ବାହାରି ଆସୁଛି ଅମରେନ୍ଦ୍ର ସହିତ । ଅମରେନ୍ଦ୍ର ହିଁ ତ ମୋର ବନ୍ଧୁ ଦିନର ପୁରୁଣା ଘନିଷ୍ଠ । ଅମରେନ୍ଦ୍ର ସବୁଦିନ ଆସି ସୁଚରିତା କଥା କୁହେ । ପ୍ରାୟ ସବୁଦିନ ସୁଚରିତାର ଚିଠି ଆଣି ମତେ ପଢ଼ାଇ ଶୁଣାଏ । ଗୋଟିଏ ଚିଠିରେ ସୁଚରିତା ଲେଖିଥିଲା—ମୁଁ ଜାଣେ ତୁମେ

ମତେ ଠକିଦେଇବ ନାହିଁ । ଯେଉଁ ପୁରୁଷଙ୍କ ଶରୀରରେ ଘନ ବାଳ ଥାଏ ସେମାନଙ୍କୁ ବିଶ୍ୱାସ କରନ୍ତୁଏ, ମୁଁ ତୁମକୁ ବିଶ୍ୱାସ କରେ । ତୁମ ଉପରେ ମୋର ଅଗାଧ ବିଶ୍ୱାସ । ଚିଠିଟି ପଢ଼ି ମୁଁ ନର୍ଭେ ହସିଲି । ମୁଁ ହସିବାରୁ ଅମରେନ୍ଦ୍ର ମୋ' ଉପରେ ରାଗିଗଲା ଓ ମୋ ସିନିସିଜିମ୍‌କୁ ସେ 'ପଦାଘାତ' କରେ କହି ଡମଡମ ହୋଇ ଚାଲିଗଲା । ଏବେ ସେଇ ସୁଚରିତାକୁ ଗ[illegible]ଙ୍କର ସ୍ତ୍ରୀ ଭୂମିକାରେ ଦେଖି ମୁଁ ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇଗଲି । କିଏ କାହାକୁ ଠକିଲା ? ଅମରେନ୍ଦ୍ର ସୁଚରିତାକୁ ? ନା ସୁଚରିତା ଅମରେନ୍ଦ୍ରକୁ ? କିଏ ? ମୁଁ ଏଠି ଏସବୁ କଥା ଠିଆ ଠିଆ ଚିନ୍ତା କରୁଥିବା ଅବସରରେ ଗନ୍ଧର୍ବ ମତେ ପରିଚୟ କରାଇ ଦେଲା ତା' ସ୍ତ୍ରୀ ସହିତ ଓ ତା' ସ୍ତ୍ରୀ ଓରଫ୍ ସୁଚରିତା ମତେ ନମସ୍କାର କରି ବୈଠକଖାନାରେ ସୋଫା ଉପରେ ବସିବା ପାଇଁ ଅନୁରୋଧ କରି ସ୍ମିତ ହସ ଟିକଏ ତା' ଓଠରେ ଖେଳାଇ ଦେଲା । ସୁଚରିତାର ବୈଠକଖାନାଟି ଅତ୍ୟନ୍ତ ରୁଚିକର ଓ ସୁନ୍ଦର ଲାଗିଲା ମତେ । ଡନ୍‌ଲପ୍ ସୋଫା, ଚଟାଣରେ ନାଲି କାର୍ପେଟ୍ । ଟି'ପୟ ଉପରେ କାଚର ରଙ୍ଗୀନ ଫୁଲଦାନୀ, ଫୁଲଦାନୀରେ ଶୋଭନ ଫୁଲ । ଗୋଟିଏ କଣରେ ଉଚ୍ଚା ଟୁଲ୍ ଉପରେ ଗୋଟିଏ ଲମ୍ବା କାଚଗ୍ଲାସ, କାଚଗ୍ଲାସ ଭିତରୁ ଗୋଟିଏ ଲମ୍ବା ମୟୂର ପୁଚ୍ଛ ଉଠି ଯାଇଛି ଉପରକୁ କାନ୍ଥକୁ ଆଉଜି, ଦୁଆର ଝରକାରେ ନରମ ନୀଳ ରଙ୍ଗର ପର୍ଦ୍ଦା- ମନୋରମ ବୈଠକଖାନା ସୁଚରିତାର । ସୁଚରିତା ଉଠିଗଲା ଚା' କରିବା ପାଇଁ । ଧୀର ଗତିରେ ଠିକ୍ ସେଇ ପୂର୍ବପରି ଲଳିତ ଛନ୍ଦମୟ ଚାଲି । ଦୁଇକପ୍ ଚା' ହାତରେ ସୁଚରିତା ପୁନରାୟ ଘରକୁ ଆସିଲା । ଲମ୍ବା ଲମ୍ବା ଆଙ୍ଗୁଠିରେ କପ୍ ପ୍ଲେଟ୍ ଧରିବାରେ ଯେ ଏପରି କମନୀୟ କଳା ରହିଛି, ସୁଚରିତାକୁ ନ ଦେଖିଥିଲେ ମୁଁ ଜାଣି ପାରି ନ ଥାନ୍ତି । ତିନିଜଣ ଯାକ ବସି ଆମେ ବହୁତ ସମୟ ଗପ କଲୁ । ମୁଁ ପଚାରିଲି—ଏ ସହର କେମିତି ଲାଗୁଛି ? ସୁଚରିତା ନମ୍ର କଣ୍ଠରେ କହିଲା—ଖୁବ୍ ଭଲ ଲାଗୁଛି । ମୁଁ କହିଲି—ଆଶ୍ଚର୍ଯ୍ୟ ! ସୁଚରିତା ପଚାରିଲା—ମାନେ ? ମୁଁ କହିଲି— ମୋ' ସ୍ତ୍ରୀ ଠିକ୍ ଓଲଟା କଥା କୁହେ । କ'ଣ କୁହେ ? ତାକୁ ଏ ସହର କୁଆଡେ ଭଲ ଲାଗୁନି । ଏଠି ଲୋକ ଗହଳି ନାହିଁ ! ଏକୁଟିଆ ଲାଗୁଛି ତାକୁ । ବୋର୍ ହୋଇ ଯାଉଛି ସେ । ସୁଚରିତା ସୁନ୍ଦର ହସ ହସିଲା । କହିଲା – ବୋର୍ କାହିଁକି ଲାଗିବ ? ଆପଣ ଦୁହେଁ ସନ୍ଧ୍ୟାବେଳେ ବୁଲି ଯାଆନ୍ତୁନି କି ? ଏଠି ରାସ୍ତା କି ସୁନ୍ଦର ! ରାସ୍ତା ଦୁଇ କଡ଼ରେ ଏତେ ସୁନ୍ଦର ସୁନ୍ଦର ଗଛ ଆଉ କୋଉ ସହରରେ ଅଛି କହନ୍ତୁ ? ମୁଁ କହିଲି – ନା ନାହିଁ । କିନ୍ତୁ ମୋ ସ୍ତ୍ରୀ ଆସିଛନ୍ତି କଟକ ସହରର ମାଛୁଆ[illegible] ପେଣ୍ଠରୁ । ପ୍ରକୃତି ପ୍ରତି ତାଙ୍କର ଆସକ୍ତି ନାହିଁ । ଗପିବା ପାଇଁ ତାଙ୍କର ଲୋକ ଦରକାର । ସୁଚରିତା କହିଲା – ଆମ ଘରକୁ ନେଇ ଆସନ୍ତୁନା ମଝିରେ ମଝିରେ । ମୁଁ କହିଲି—ଧନ୍ୟବାଦ୍ । କିନ୍ତୁ ରାସ୍ତା କଡ଼ର ଗଛ ଦେଖେଇବା ପାଇଁ ବାହାରକୁ ନେଇ ଯିବେନି ସେପରି । ମାଇକିନିଆଙ୍କ ପରି ଘର କୋଣରେ ବସି ବସି ଗପିବେ

ଖାଲି । ସୁଚରିତା ସମସ୍ତ ଶରୀର ଦୋହଲାଇ ହସିବାକୁ ଲାଗିଲା – ଆପଣଙ୍କ ବେଶ୍ ଚମତ୍କାର ଲୋକ । ସେହି ଚମତ୍କାର ସନ୍ଧ୍ୟାରେ ସୁଚରିତା ଘରୁ ମୁଁ ଯେତେବେଳେ ବାହାରେ ଆସି ରାସ୍ତା ଉପରେ ଠିଆହେଲି, ସେତେବେଳେ ଆକାଶରେ ବର୍ଷା ଶେଷର ଓଦା ଜହ୍ନ ଉଇଁ ଆସୁଥିଲା । ସେଇ ଓଦା ଜହ୍ନ ଓ ଧୀର ପବନରେ ଘରକୁ ବାହୁଡ଼ି ଆସୁ ଆସୁ ରେବା ଦାସର ଅଯଥା ଆତ୍ମହତ୍ୟା କଥା ମୋର ମନେ ପଡ଼ିଲା – ଆହା ! ରେବା ଦାସ ସେଦ୍ଧନ, କହ୍ନୁବର୍ଣ୍ଣି ଥିଲେ, କେତେ କଅଁଳ ବୟସରେ ନିଜ ଜୀବନଟାକୁ ନିଶ୍ଚିହ୍ନ କରିଦେଲ ! ରେବା ଦାସ ! ତୁମେ କାହିଁକି ଏପରି କଲ ? ମୁଁ ଯେତେଦୂର ଶୁଣିଥିଲି ତୁମେ କାହାକୁ ଜଣକୁ ଭଲ ପାଉଥିଲ, ତମ ଘରର ଆପତ୍ତି କରିବାରୁ ବାଥ୍‌ରୁମ୍‌ରେ ତୁମେ ଆତ୍ମହତ୍ୟା କଲ । ଆଉ କିଏ କହୁଥିଲେ ଯେ, ନା ତୁମେ ଯାହାକୁ ଭଲ ପାଉଥିଲ ସେ ତୁମକୁ ଠକି ଦେଇ ଅନ୍ୟ ଜଣକ ପାଖକୁ ଚାଲିଗଲା । ତ' କ'ଣ ହୋଇଗଲା ? ସୁଚରିତା ଭଲରେ ଅଛି । ପୃଥିବୀର ଆକାଶର ଜହ୍ନ ଉଇଁଛି । ରେବା ଦାସ୍ : ତୁମେ କାହିଁକି ନିଜକୁ ନିଶ୍ଚିହ୍ନ କରିଦେଲ ?

(୧୯୮୦)

ଯାହା ଯାହା ସେ କହିଗଲେ ସେ ସବୁର ଜଟିଳ ଅର୍ଥରେ କାଲୁସ୍ତ ଖୁବଟି ସ୍ପଷ୍ଟ ଫୁଟି ଉଠୁଥିଲା ମଧ୍ୟ ଲମ୍ବା ପିଚୁରାସ୍ତା ପରି ବେଶ୍ ସମତଳ ଭାଷାରେ ପ୍ରକାଶ କରି ଦେଲେ ସେ । ମେଟାଲ ପରି ଶ୍ୱେକ୍‌ଠୋକ୍ କଣ୍ଠରେ—'ଦେଖନ୍ତୁ । ଜନ୍ମ ରକ୍ତ ସାନ ଭାଇକୁ ପାଠ ପଢ଼ାଇଲି । ଆଦର୍ଶ ଫାଦର୍ଶ ପ୍ରଚୁର ଥିଲା ତ ମୋର; କିନ୍ତୁ ହେଲା କ'ଣ ? ଧୋକା ଦେଇ ଦେଲା । ମାଇପ ବୋଲରେ ପଡ଼ି ! ମୋ ମାଇପ ବି କ'ଣ ସେତେବେଳେ ଚେତିଥି ନ ଥିଲା କି ? ବହୁତ ଖେଞ୍ଚୁଥିଲା । କିନ୍ତୁ ଆଦର୍ଶ ଫାଦର୍ଶ ପ୍ରଚୁର ଥିଲା ତ ମୋର । ସେ ଯାହାହେଉ, ଯାହା ହବାର ତ ହେଲା । ବଡ଼ ପୁଅକୁ ସାଇନ୍ସ ପଢ଼େଇଲି । ହାରାମ୍‌ଜାଦା ଥରେ ଥର ଗଡ଼ିବା ପରେ କହିଲା; 'ମୋ'ର ତ ଆର୍ଟସ ଲାଇନ୍, ସାଇନ୍ସ କାହିଁକି ପଢ଼ାଉଥିଲ କି ?, ବେଶ୍ ମାନିଲି । ସେଥିରେ ବି ଦୁ' ଥର ଚକ୍-ପଟାଂ ମାରି ହାରାମ୍‌ଜାଦା ଏବେ ବା:ଏ: ଦେଉଛି । ପ୍ରାଇଭେଟ୍‌ରେ, ଆଉ ଗୋଟାକ ପରେ ଗୋଟାଏ ଇଣ୍ଟରଭ୍ୟୁ ଦୌଡ଼ୁଛି ।"

ଏତିକ କହି ସେ ଅଟକିଲେ । ଆକାଶକୁ ଚାହିଁଲେ । ଆକାଶର ରଙ୍ଗ ତାଙ୍କର ପେଜଳିଆ ଆଖି ଉପରେ ଗ୍ରାସ୍ୟଜନକ ପ୍ରତିକ୍ରିୟା ସୃଷ୍ଟି କଲା ଯେପରି । ମୁହଁକୁ ତଳକୁ ଓଟାରି ଆଣିଲେ ସେ ଓ ଏକ ଅଦ୍ଭୁତ ଗୁହାଳିଆ ଚାହାଁଣୀ ସିଧା ମୋ ମୁହଁ ଉପରେ ଲଦି ଦେଇ କହିଲେ—"ଦେଖନ୍ତୁ, ଆପଣଙ୍କୁ ଲାଗିଲା । ଏଇଟି ମୋର ସାନ ପୁଅ ନୁହେଁ, ସଂସ୍କ । ଖାଲି ପାଶ୍ କଲେ ତ ଚଳିବନି । ମଗଜଟିକୁ ଏମିତିଭାବେ ବାଗେଇ ଦେବେ ଯେ ମୋଟା ଦରମାର ଚାକିରିଟିଏ ପାଇବ ଯେମିତି, ମୋ ପରିକା ହକୁଛୁଆ ଚାକିରି ନୁହେଁ । ଗୁଡ଼ାଏ ଅର୍ଜିବ ଯେମିତି । ମତେ ପୋଷିବ, ମୋ ମାଇପକୁ ପୋଷିବ, କରଜ ଶୁଝିବ । ଗୁଡ଼ିଏ ଭଉଣୀକୁ ପାର୍ କରେଇବ । ବୁଝିଲେ ତ ? ଭରସା ବୋଇଲେ ସେଇ ସାନ ପୁଅଟି !" କହି ସେ ଗଳା ଖଙ୍କାର ମାରିଲେ ଓ ମୋ' ଉପରେ ଏତେବେଳଯାଏ ଲଦା ହୋଇଥିବା ଚାହାଁଣୀଟି ଏଥର ସିଧା ପ୍ରବେଶଗଲା ଭିତରକୁ "ଆରେ ଏ ଟୁକୁନା—ଆରେ ନାକିଆ, ଅଇଲୁ ଅଇଲୁ ।"

କବାଟଟି ଅଳ୍ପ ଖୋଲିଗଲା ଓ ମଝିଆ ବାରଣ୍ଡାର କିୟଦଂଶ ଦୃଶ୍ୟମାନ ହେଲା । କଳା ପଡିଯାଇଥିବା ଲଣ୍ଠନ କାଚ ଭିତରରୁ ମିଞ୍ଜି ମିଞ୍ଜି ନାଲିଆ ଆଲୁଅ ପରି ଅମନା କାନ୍ଥର ପୁଷ୍ଟିଳୁ ଓ ଚୁଲିଧୂଆଁ ଭିତରେ ବସି ଦୁ' ତିନି ବର୍ଷର ଝିଂଘାଣ ନାକିଆ ଝିଅଟେ ମୁଢ଼ି ଖାଉଛି ଥାଏ ।

॥ ୧୬ ॥

କବାଟଟି ଆଉଜେଇ ଦେଇ ପିଲଟିଏ ଆସି ସାମ୍ନାରେ ଛିଡ଼ା ହେଲ । ବାର ତେର ବର୍ଷ । ଟଭଲା, ଛୁମ୍ ଛାମ୍ ଚେହେରା । ଉପସ୍ଥିତ ଓଳଜଆ ନୁହେଁ, ସଘନ । ନିକୁଞ୍ଜ ବାବୁ କହିଲେ—"ନମସ୍କାର କର୍ । ନୂଆ ମାଷ୍ଟ୍ରେ । କା'ଲିଠୁ ଯାଙ୍କଶ ପାଖେ ପଢ଼ିବୁ ।" ପିଲଟି ଚଟ୍ପଟ୍ ହାତ ଯୋଡ଼ାଇ ନମସ୍କାର କଲ ଓ ମୋ ଉପରେ ଚକଚକରେ ଥରେ ଆଖି ବୁଲେଇ ନେଲା—ଗୋଲ୍ ଗୋଲ୍ ଆଖି ଝକ୍ ମକ୍ ଝକ୍ ମକ୍ ଆଖି । ଧଳା ପକ୍ଷୀର ଉଡ଼ନ୍ତା ଡେଣାରେ ଚକ୍ ଚକ୍ ଖରା ପଶ ।

॥ ୧ ॥

ଅନ୍ଧାର ବହଳ ହେଲେ ବାପା ଫେରନ୍ତି । କବାଟ ଝଡ଼୍ ଧଡ଼୍ କରି, ଆ' ଲୋ ଇନ୍ଦୁ, ଶୋଇପଡ଼ିଲୁଣି କି ? କହି ଡାକ ଛାଡ଼ନ୍ତି । ଇନ୍ଦୁ ମୋ' ସାନ ଭଉଣୀ । ଠିକ୍ ଚେଇଁ ରହିଥାଏ । ଲଣ୍ଠନଟି ଉଞ୍ଚେଇ ଧରି କବାଟ ଖୋଲେ । ବାପାଙ୍କ ତମ୍ବାଳିଆ ମୁହଁ ଉପରେ ଲଣ୍ଠନର ନାଲିଆ ଆଲୁଅ ପଡ଼େ—ସେତେବେଳେ ବାପାଙ୍କ ମୁହଁଟି ଦେଖାଯାଏ ଗୋଟିଏ ଜଳି ଆସୁଥିବା ଫର୍ଣ୍ଣେସ୍ ପରି । ଦାଣ୍ଡଘର ଖଟ ଉପରେ ଶୋଇ ଶୋଇ ବୁଜିଲା ଆଖିରେ ମୁଁ ଦେଖେ । ଉଠେନି କେବେ । ମତେ ଡର ମାଡ଼େ ।

ସେଦିନ ଅନ୍ଧାର ବହଳତର ହୋଇ ଆସୁଥାଏ । ଆଖପାଖ ଘର ଶୂନ୍ଶାନ୍ ହୋଇ ଯାଇଥାଏ । ଇନ୍ଦୁ ପଚାରିଲା—"ଭାଇ, ରାତି କେତେ ହେଲା ?" ମୁଁ ଖାଲି 'ଉଁ ?' କହି ଚୁପ୍ ରହିଲି । ଦେଖିଲି, ହୋଉ ଏପାଖ ସେପାଖ ହେଲା । ଅନେକ ଥର । ଶେଷରେ ଯେପରି ବାଧ୍ୟ ହୋଇ କହିଲା—"ତୁ ଯା' ଟିକେ ଦେଖି ଆସିବୁ । ଏତେ ଡେରି ତ କେବେ କରନ୍ତିନି ।"

ରାତି ବେଶ୍ ନିଛାଟିଆ ହୋଇ ଯାଇଥାଏ । ମୁଁ ଚମନ୍ଲାଲଙ୍କ ଲୁଗା ଦୋକାନ ଆଡେ ଚାଲିଲି । ଗ୍ଲକଶରୁ ଅବସର ନେବା ପରେ ବାପା ସେଇଠି କାମଟେ ଯୁଟେଇ ଥାନ୍ତି । ପହଞ୍ଚି ଦେଖିଲି ଦୋକାନ ବନ୍ଦ । ପଛପଟକୁ ବୁଲିଗଲି । ଦୁଆରଟି ଅଳ୍ପ ମେଲା ହୋଇଥାଏ । ପିଣ୍ଡି ଉପରେ ଜଗୁଆଳଟି ବସି ବସି ବିଡ଼ି ଟାଣୁଥାଏ । ପଚାରିଲି—"ବାପା ଅଛନ୍ତି ?" "ହଁ, ଏହି ଅନ୍ଦର ମେ ।" କଥାଟି ଫୋପାଡ଼ି ଦେଇ ସେ ବିଡ଼ି ଶୋଷିବାରେ ଲାଗିଲା ।

ଗୋଟିଏ ଲମ୍ବା କାଗଜ ଉପରେ ହାମୁଡ଼େଇ ପଡ଼ି ହିସାବ କରିବାରେ ବ୍ୟସ୍ତ ଥାନ୍ତି ବାପା । ପିଲାଦିନେ ଗପ ବହିରେ ଦେଖିଥିବା ଛବିଟିଏ ମନେ ପଡ଼ିଲା—କଣ୍ଣୀ ପ୍ରଜାଟିଏ ରଜାଙ୍କ ସାମନାରେ ହାମୁଡ଼େଇ ପଡ଼ିଥାଏ—ଖୋଲା

ହାଡ଼ୁଆ ପିଠି ଦେଖେଇ ରନା କହୁଥାନ୍ତି—'ଚଲ୍‌ଓ ଚାବୁକ୍' । ମୁଁ ଡାକିଲି 'ବାପା' । ବାପା ମୁହଁ ଉଠାଇ ଚାହିଁଲେ, କହିଲେ—"ହଁ ଚାଲ୍ ଚାଲ୍, ଦୁସାବସ୍ଥା ଗୋଳମାଳ ହୋଇଯାଇଥିଲା ଯେ—ଠିକ୍ ହୋଇ ଗଲାଣି ।"

ଯେତେବେଳେ ରାସ୍ତା ଉପରକୁ ଆମେ ଦୁହେଁ ଓହ୍ଲାଇଲୁ, ଘରର ନିର୍ଜନତା ଆମକୁ ଘେରିଗଲା, ପାଉଣାଦାର ପରି । ଚୁପ୍ ଚୁପ୍ ଆମେ ଚାଲୁଥାଉ । ବାପା ତଳକୁ ମୁହଁ ପୋତି ଚାଲୁଥାନ୍ତି । ମଝିରେ ମଝିରେ, ବତୀଖୁଣ୍ଟର ଚିରୁଡ଼ା ଆଲୁଅ ତଳ ଦେଇ ଚାଲିଗଲା ବେଳେ ମୁଁ ବାପାଙ୍କ ମୁହଁକୁ ଚାହୁଁଥାଏ—ଚୁଲି ଭିତରେ ସେଁ ସେଁ ହେଉଥିବା ଓଦାଳିଆ କାଠ ପରି ଦେଖା ଯାଉଥାନ୍ତି ସେ । ମୁଁ ମୁହଁ ଫୁଲାଇ ନିଏ । ପବନ ନ ଥାଏ । ଦୁଇପାଖର ନିଶ୍ଚଳ ଗଛପତ୍ର ଉପରେ ଆଖି ପହଁରେଇ ଆଣୁଥାଏ । ଉପରକୁ ଚାହୁଁଥାଏ କେତେବେଳେ । ଆକାଶକୁ । ଅନେକ ତାରା ।

କହିଲି—"ବାପା; ଆଜି ଗୋଟାଏ ଟିଉଶନ ଯୋଗାଡ଼ କରିଛି, ବହୁତ କଷ୍ଟରେ ।" ବାପା ଚାଲୁଥିଲେ । ଚାଲିଲେ କେବଳ 'ହୁଁ'ଟିଏ ଭରିଲେ, କଣ୍ଠ-ଗହ୍ୱର ଭିତରୁ । ଆଉ କିଛି କହିଲେ ନି । ମୁଁ ଯେମିତି ନରମ ମାଟି ମେଞ୍ଚାଏ ଉପରେ କଅଁଳେଇ ଉଠୁଥିବା ଚାରାଟିଏ—ଆଲୁଅ ଶୋଷି ନେଉଛି, ତାରାମାନେ ହାତଠାରି ଡାକୁଛନ୍ତି । ଆକାଶର ରଙ୍ଗ ମତେ ପାଗଳ କରୁଛି । କେତେ ବେଖାପ ହୋଇ ମୁଁ ଚାଲୁଥାଏ ବାପାଙ୍କ ପାଖେ ପାଖେ—ଇଟା ଘଷି ଚାଳର ଟାଣ ପୋଡ଼ା ମାଟି ସେ । ପଚାରିବାକୁ ଇଚ୍ଛା ହେଲା—'ବାପା, ତମେ କେବେ ନିର୍ମେଘ ଆକାଶର ତାରା ଦେଖିଛ ? ବା ଆକାଶର ରଙ୍ଗ ? ଦେଖି ନଥିଲେ ବରଂ ଭଲ । ତମ ସାଥେ ମତେ ବେଖାପ୍ ହେବାକୁ ଦିଅ । ଆକାଶ-ପବନ-ତାରାଙ୍କୁ ମତେ ପାଗଳ କରିବାକୁ ଦିଅ । ମତେ ଆଲୁଅ ଶୋଷିନେବାକୁ ଦିଅ, ବାପା ।' ମୋ' ଭିତରେ ଆକୁଳତା କୁଆଁରେଇ ଉଠିଲା ।

ଘରେ ପହଞ୍ଚି କବାଟ ଠକ୍ ଠକ୍ କରିବାରୁ ଇନ୍ଦୁ କବାଟ ଖୋଲିଲା । ଲଣ୍ଠନର ନାଲିଆ ଆଲୁଅ ବାପାଙ୍କ ତମ୍ବାଳିଆ ମୁହଁ ଉପରେ ପଡ଼ିଲା ଫଟୋଷ୍ଟାଟ୍ ପରି ଦେଖାଗଲା ବାପାଙ୍କ ମୁହଁ । ମତେ ଭୟ ଲାଗିଲା ।

|| ୩ ||

ବୋଢିଆ ମୁତୁରା ଗନ୍ଧ ଆଉ ଅଳନ୍ଦି ଲାଗି କୋଠରୀ କାନ୍ଥ ଭିତରେ ସେ ବସିଥାଏ ମୋ ସାମନାରେ । ଗୋଲ୍ ଗୋଲ୍ ଝକ୍‌ମକ୍ ଝକ୍‌ମକ୍ ଆଖିଦୁଇଟି ତାର ମାଛ ପରି ଚଳଚଞ୍ଚଳ । ଆଲବର୍ଟ ସ୍ୱାଇଜରଙ୍କ ଜୀବନୀ ଆଲୋଚନା କରି ଚାଲିଥାଏ

ମୁଁ—ଚାଳିଶ ବର୍ଷ ପରେ ଡାକ୍ତରୀ ପଢ଼ିବାକୁ ଆରମ୍ଭ କଲେ - ପଇଁଚାଳିଶ ବର୍ଷ ପରେ ତାଙ୍କର ଅଦମ୍ୟ ଇଚ୍ଛାର ଜିତ୍ ହେଲା । ଡାକ୍ତରୀ ପାସ୍ କଲେ, ଚାଲିଗଲେ ଆଫ୍ରିକାର ଜଙ୍ଗଲକୁ— ବଣୁଆ ଲୋକଙ୍କ ପାଖକୁ—ଖାସ୍ ଯେଉଁମାନଙ୍କ ପାଇଁ ସେ ଡାକ୍ତରୀ ପଢ଼ିଲେ—ମଶା ଡାଆଁଶଭର୍ତ୍ତି ସନ୍ତସନ୍ତିଆ ଘରେ ସଢ଼ିଲେ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ସ୍ନେହ-ବିହ୍ୱଳ ହୋଇ ଶୁଣି ଚାଲିଥାଏ ସେ । ଆଖି ଦୁଇଟି ତାର ଯେମିତି ଦୁରନ୍ତ ପକ୍ଷୀର ଡେଣା ପରି ଛଟପଟ ଛଟପଟ କରୁଥାଏ ।

ପଚାରିଲା—"ସାର୍, ସେମାନେ ଏମିତି କାହିଁକି ହୁଅନ୍ତି ? ଏମିତି ପାଗଳ ପରି ?"

ମୁଁ ବେକ ଗଲି । ତା ମୁହଁକୁ ଫାଙ୍କା ଦୃଷ୍ଟିରେ ଚାହିଁ ରହିଲି, କିଛି ସମୟ, ତା' ପରେ । ଆଖି ଫେରାଇ ଆଣି କହ୍ନା ଚୁଲିର ଧୂଆଁ ଆଉ ନେସର୍ କାନ୍ଥ ସେପଟର ଘର ସିଝା ଅଣ୍ଟାଗଛ ଦେଖିବା ବ୍ୟତୀତ ଆଉ କ'ଣ ବା କରିପାରିଥାନ୍ତି ମୁଁ ?

କିନ୍ତୁ ଯାହାହେଉ, ସେଦିନ ରାତିରେ; ଟିଉଶନ୍ ସାରି ଫେରିଲାବେଳେ ମତେ ଖୁବ୍ ଖୁସି ଲାଗିଲା । ରାସ୍ତାଘାଟ ଗଛବୃକ୍ଷ ସବୁ ବେଶ୍ ଭଲ ଲାଗୁଥାଏ । ତା'ର ସେଇ ଶ୍ରେଷ୍ଠ ପ୍ରଶ୍ନଟିର ଉହାଡ଼ରେ ଯେପରି ନିଜ ଛବି ଦେଖିଥିଲି ମୁଁ । ମୁଁ'ତ ଆଉ ଆଲୁଅ ଶୋଷି ପାରିବନି—ମତେ ତ ସେଁ ସେଁ ହୋଇ ସିଝିବାକୁ ପଡ଼ିବ ଚୁଲି ଭିତରର ଓଦାକଅ କାଠ ପରି, ବାପାଙ୍କ ପରି । ଟୁଲୁନା ଭିତରେ ମୁଁ ଫୁଲ ହୋଇ ଫୁଟି ଉଠିବି ବରଂ ।

|| ୪ ||

ମୋଟା କାଚ ଗ୍ଲାସରେ କଫି ଚା' ପରଷିଲେ ନିକୁଞ୍ଜ ବାବୁ । ନିଜେ ଗୋଟିଏ ଗ୍ଲାସ ନେଇ ବସିଲେ । ଜୋରଣୀ ଶୋଷିଲା ପରି ଗୋଟାଏ ସୋଡ଼ୋକା ମାରିଲେ । ଆଉ ତାପରେ ନିଧଡ଼କ ଲଙ୍ଗଳା ଭାଷାରେ କହିଲେ—"ଦେଖନ୍ତୁ, ଆପଣଙ୍କ ପଢ଼ା ମୋର ଆଦୌ ମନମୁତାବକ ହେଉନାହିଁ । ଏମିତି କ'ଣ ପଢ଼ାଉଛନ୍ତି ଆପଣ ? ତା କଞ୍ଚା ମୁଣ୍ଡଟାକୁ ବିଗାଡ଼ି ଦେବେ ନା କ'ଣ ? ସେ ସବୁ ହେବରେସାମି ଚଳିବନି । ପଢ଼େଇବେ ଯଦି ପଢ଼େଇବେ, ନହେଲେ ମୁଁ ଆପଣଙ୍କୁ ବିଦା କରିଦେବି । ସାଫ୍ କଥା ।" କହି ସାରି ସେ ନିଃଶ୍ୱାସ ନେଲେ ଓ ରୋକ୍ଟୋକ୍ ଆଖିରେ ମତେ ଚାହିଁଲେ । ତାଙ୍କ ଆଖି ଭିତରେ ମୁଁ କିନ୍ତୁ ଦେଖିଲି ବାପାଙ୍କ ଫର୍ଣ୍ଣେଶ୍ ପରି ମୁହଁ ଓ ଆପି ନିଆଁଣ୍ଡି ଗୋଟିଏ ପରିବାର—ମୋ' ଘର ଭଉଣୀ

ବେଉ—ଯେଉଁମାନେ ଦିନସାରା ନର୍ଦ୍ଦାର୍ ଖଟନ୍ତି । ସନ୍ଧ୍ୟା ହେଲେ ବସି ବସି ହାଇ ମାରନ୍ତି ଓ ଧସି ପଡ଼ିଥିବା କାନ୍ଥ ଏବଂ କଣା ଚାଳବାଟେ ଜହ୍ନ ଦେଖନ୍ତି । ରୂପକଥାର କାହାଣୀଟିଏ ଯୋଗର । ଆମର ନିର୍ମମ ଭାଗ୍ୟକୁ ସମ୍ବଳ ଦେଇ ପରି ଯୋଡ଼-ହସ୍ତ-କଣ୍ଠରେ ମୁଁ କହିଲି—"ନା, ନା, ମତେ ବଦ. କରନ୍ତୁନି । ମୁଁ ପଢ଼େଇବି, ଆପଣ ଯେମିତି କହିବେ । ଆପଣଙ୍କ ଅର୍ଡ଼ର ମାଫିକ୍ ତାକୁ ଠିଆରି କରି ଗଢ଼ିଦେବି ।"

କିନ୍ତୁ ଆଶ୍ଚର୍ଯ୍ୟ ! ନିକୁଞ୍ଜ ବାବୁଙ୍କ ଆଖିରେ ଖୁସି ଝଲକ ଦିଶିଲାନି । ବରଂ କପଟ ଏକ ଦୁର୍ବୋଧ କ୍ରୋଧ ଜାନ୍ଦ ଭଳି—ଅପ୍ରୋଗଣ୍ଡର କଳା ଗ୍ଲୁଇ ଯେପରି ତାଙ୍କ ସାମନାରେ ଶାଗୁଣା ପରି ଡେଣା ମେଲି ଉଡ଼ିଗଲା ।

ସେଦିନ ସନ୍ଧ୍ୟାରେ, ଟୁକୁନାକୁ ଟିଉଶନ୍ କରାଉବେଳେ, ପିଲାଦିନର ଗୋଟିଏ ସ୍ମୃତି ବାରମ୍ବାର ମୋ ମନକୁ ଆସୁଥାଏ—ନକୁଳା ଘର ଭିତରେ, ଚଢ଼େଇ ଛୁଆଟିଏ ଭଲ ଉଡ଼ି ଶିଖି ନ ଥାଏ । ତଳେ ପଡ଼ିଯାଇ ଛଟପଟ ହେଉଥାଏ । ଫଡ଼୍ ଫଡ଼୍ କରି ଡେଉଁଥାଏ-- ମୁଁ ଆଉ ମୋର ସାନଭାଇ ଦୁହେଁ ମିଶି ଘର ଭିତରେ ଏକର ସେକର ସେକର ଏକର ହୋଇ ଖାଲି ଧରିବାକୁ ଚେଷ୍ଟା କରୁଥାଉ—ଶେଷରେ ଗୋଟିଏ ଲେଉଟ ବାଡ଼ି ନେଇ ତା ଡେଣାକୁ ପିଟିବା ଲାଗି ପାଗଳ ପରି ଘରସାରା ଦୌଡ଼ାଦୌଡ଼ି କରିବାକୁ ଲାଗିଲୁ । ଅନେକ ଦିନ ତଳର ସେଇ ଦରଭୁଲା ସ୍ମୃତିଟି ଆସି ମତେ ବାରମ୍ବାର ଠୋକର ଦେଉଥିବା-ବେଳେ ଟୁକୁନା ହଠାତ୍ ପ୍ରଶ୍ନ କଲା—"ସାର୍, ସମସ୍ତେ କ'ଣ ବଢ଼ିଲେ ସାଇକର୍ଙ୍କ ପରି ହୋଇପାରିବେ ?"

ମୁଁ ହଠାତ୍ ଠାଆସ୍ କିନା ତା ଗାଲକୁ ଗୋଟାଏ ଥାପଡ଼ ମାରି କହିଲି—"ଅଙ୍କ ବହି ଆଣ, ସବୁବେଳେ ବୋକାଏ ଗପ, ନାହିଁ ?"

ଭୟ ନୁହେଁ, ବିସ୍ମୟରେ ବିସ୍ଫାରିତ ଆଖିରେ ଟୁକୁନା ମତେ ଚାହିଁଲା । ତା'ପରେ ବହି ଖୋଲି ଚୁପ୍‌ଚାପ୍ ଅଙ୍କ କଷିବାକୁ ଲାଗିଲା । ପିଲାଦିନର ସେଇ ସ୍ମୃତିଟି ମୋ' ମନ ଭିତରେ ଖାଲି ଖୁମ୍ପିବାରେ ଲାଗିଥାଏ ।

ରାତିରେ ଟିଉଶନ ସାରି ଫେରିଲାବେଳେ ନିକୁଞ୍ଜ ବାବୁଙ୍କ ସଙ୍ଗେ ଭେଟ ହେଲା – ଗୋଟାଏ ହାତରେ ଗହମ ବ୍ୟାଗ୍ ଓ ଆର ହାତରେ ପରିବା ବ୍ୟାଗ୍‌ଟିଏ । ଖୁବ୍ ପରିଶ୍ରାନ୍ତ ଦେଖା ଯାଉଥାନ୍ତି । ଉପରେ ଏକ ଦମ୍ଭମୟ କଣ୍ଠରେ କହିଲେ— "କିଛି ଖରାପ ଭାବିଲେ କି ?" ମୁଁ ତାଙ୍କ କଥାରେ କୌଣସି ଉତ୍ତର ନ ଦେଇ ଚାଲି ଆସିଲି ।

ଫେରିଲାବେଳେ ମୋ ଗୃହପାର୍ଶ୍ୱ ସଡ଼କରେ ଶୂନ୍ୟତା ଘେରିଥାଏ । ଆକାଶର ରଙ୍ଗ ଥାଏ, ତାର୍ ଥାଏ, ରାସ୍ତା ଦୁଇକଡ଼େ ଗଛ ଥାଏ । ପତ୍ର ଥାଏ । ପବନ ବି ଥାଏ । କିନ୍ତୁ ମୁଁ ଅନୁଭବ କରୁଥାଏ କେବଳ ଗୋଟିଏ କଥା—ମୋ ପାଦତଳେ ମାଟି, ଚାଆଣ ମାଟି ଆଉ ଶେଟି ପଥର । ଖୁବ୍ ହତୋତ୍ତେଜିତ ମନେ ହେଉଥାଏ ନିଜକୁ ।

ଘରେ ପହଞ୍ଚି କବାଟ ଠକ୍ ଠକ୍ କରିବାରୁ ଇନ୍ଦୁ କବାଟ ଖୋଲିଲା । ଲଣ୍ଠନ ଟେକି କହିଲା—"ଇସ୍ ମା ଗୋ, ତମ ଦେହ ଖରାପ କି ? ତମ ମୁହଁ ଏମିତି ଲାଲ ପଡ଼ିଯାଇଛି କାହିଁକି ?" ହଠାତ୍ ଇଲେକ୍ଟ୍ରିକ ସକ୍ ଖାଇଲା ପରି ଚମକି ପଡ଼ିଲି ମୁଁ । ଏକ ଅଦ୍ଭୁତ ଭୟ ମୋ ଭିତରେ ପଶିଗଲା । ଚିତ୍କାର କରି ପଚାରିବାକୁ ଇଚ୍ଛା ହେଲା—କେମିତି, କେମିତି ଦେଖା ଯାଉଛି ? ଫର୍ଷ୍ଟ୍ରେସ୍ ପରି ନୁହେଁ ତ ? ଫର୍ଷ୍ଟ୍ରେସ୍ ପରି ନୁହେଁ ତ ?

(୧୯୭୪)

# ଅତିକ୍ରାନ୍ତ

ବାଲ୍ୟକାଳରେ ମୁଁ ଅତ୍ୟନ୍ତ ରୁଗ୍‌ଣ ଓ ଦୁର୍ବଳ ଥିବାରୁ ମୋର ବାହାରେ ବୁଲିବା ଅଥବା ଖେଳିବା ଲାଗି ପୈତୃକ ନିଷେଧ ଥିଲା । ମୋ ବାଲ୍ୟକାଳର ପ୍ରାଥମିକ ବର୍ଷ, ମାସ ଓ ଦିନଗୁଡ଼ିକ କେବଳ ଆମ ଘରର ଅନ୍ଧାର, ମଶା, ମୂଷା ଓ ଅସରପାଙ୍କ ଗମତ୍ର ଗନ୍ଧ ଭିତରେ ବିତି ଯାଉଥିଲା । ତା' ଭିତରେ ଆମର ଘରଟି ଏକମାତ୍ର କୋଠାଘର ଥିଲେ ମଧ୍ୟ ଘରର ଯୋଜନା ଓ ଗଢ଼ଣ ମୋ ମନଲାଖି ନଥିଲା ଆଦୌ । ଘରଟି ଉତ୍ତର ଆଡ଼କୁ ମୁହଁ କରିଥିବାରୁ ଓ ଅଧିକାଂଶ ଘରର ଝରକା ନିହାତି ସାନ ହୋଇଥିବାରୁ ଘର ଭିତରେ ପର୍ଯ୍ୟାପ୍ତ ସୂର୍ଯ୍ୟାଲୋକ ଖେଳେଇ ହୋଇପାରୁ ନ ଥିଲା କି ପବନ ଯା' ଆସ କରୁ ନ ଥିଲା । ବିଶେଷତଃ ଆମ ଶୋଇବା ଘର ବଖରା ଦୁଇଟି ଥିଲା ମୋ' ପକ୍ଷରେ ଅତ୍ୟନ୍ତ କଷ୍ଟଦାୟକ । ଆମ ଜମିର ଶେଷ ପ୍ରାନ୍ତ ଉପରେ ଏହି ବଖରା ଦୁଇଟି ପାଚିର କାର୍ଯ୍ୟ ତୁଳାଉ ଥିବାରୁ ଏହି ବଖରାରେ ଝରକା ରଖିବା ସମ୍ଭବ ହୋଇ ନ ଥିଲା ଓ ଫଳରେ ଦିନର ଅଧିକାଂଶ ସମୟ ଅନ୍ଧାରିଆ ପଶ୍ୟା. ପବନହୀନ ଚୋଟିଏ ଧକ୍ ଧକ୍ ଧଳା ଥଣ୍ଡା କାନ୍ଥ: ଦେହରେ ମୋ' ଦୃଷ୍ଟି ପିଟି ହୋଇ ଫେରି ଆସୁଥିଲା । ମତେ ସେହି ଘର ଭିତରେ ଭାରି ଡର ଓ ଅସହାୟ ଲାଗେ ।

ବେଳେବେଳେ ତେଣୁ ମୁଁ ଲୁଚି ଲୁଚି ଭାଇଙ୍କ ପଛେପଛେ ବାହାରି ଆସୁଥିଲି ଖୋଲା ଭୂଇଁ, ଗଛ, ପୋଖରୀ, ସୂର୍ଯ୍ୟାଲୋକ ଓ ପବନ ଭିତରକୁ । ଭାଇ କେତେବେଳେ ଖଣ୍ଡ ଗୋଡ଼ରେ ଫୁଟବଲ୍ ଖେଳୁଥିଲେ, କେତେବେଳେ ଗଛ ଉପରକୁ ଚଢ଼ିଯାଇ ପାଚିଲା ଆମ୍ବ ଝଡ଼ଉ ଥିଲେ, କେତେବେଳେ କେତେବେଳେ ପୋଖରୀରେ ବନଶୀ ପକେଇ ଧ୍ୟାନମଗ୍ନ ରହୁଥିଲେ ତ' କେତେବେଳେ ଖୋଲା ଫାଙ୍କା ଭୂଇଁ ଉପରେ ଗିଦ୍ ଗିଦ୍ ହୋଇ ଦଉଡ଼ି ଯାଉଥିଲେ ।

**ଦିନକର ଘଟଣା :**

ସେତେବେଳେ ଆମର ବାର୍ଷିକ ପରୀକ୍ଷା ଫଳ ବାହାରି ଯାଏ ଓ ଭୂଗୋଳ ଏବଂ ସ୍ୱାସ୍ଥ୍ୟରକ୍ଷାରେ ଫେଲ୍ ହୋଇଥିବାରୁ ଭାଇ ତ' ମେରିଟ୍‌ରେ ଉତ୍ତୀର୍ଣ୍ଣ ହୋଇଥାନ୍ତି ଓ ଏ କଥା ଘରେ କାହାରିକୁ ଜଣେଇବା ପାଇଁ ମୋତେ ବାରଣ କରିଥାନ୍ତି । ଚିର-ଅନୁଗତ ମୁଁ ଭାଇଙ୍କ କଥା ଅକ୍ଷରେ ଅକ୍ଷରେ ପାଳନ କରୁଥାଏ ଓ ଏହି ସୁଯୋଗରେ ଦିନେ ସକାଳେ ଭାଇଙ୍କ ପଛେ ପଛେ ମୁଁ ଆମ ଘରର

ଅନ୍ଧାର, ମଶା, ମୂଷା ଓ ଅଣ୍ଡା ଜାଳ୍ପ ଭିତରୁ କୌଣସିରେ ବାହାରି ଆସିଲି । ସେତେବେଳେ ଖଣ୍ଡହର ସକାଳଗୁଡ଼ିକ ମତେ ଖୁବ୍ ଭଲ ଲାଗୁଥିଲା । ବିଶେଷତଃ, ଗ୍ରୀଷ୍ମ ଋତୁର ସକାଳ-ସାରା ଗୋରା ଖରା, ସ୍ୱଚ୍ଛ ଆକାଶ, ଉଜ୍ଜ୍ୱଳ ପୃଥିବୀ, ଦେହର ଖାଉଆ ବାସ୍ନା, ଆଉ ଖୋଲା ଭୂଇଁ ଉପରେ ବାଉଁଳା ପବନ ମତେ କାଉଁରି କାଠି ପରି କାନ୍ଥ ଘେର ଭିତରୁ ଟାଣି ଆଣେ ।

ସେଦିନ ଏହିପରି ଏକ ସକାଳରେ ମୁଁ ଖାଇଙ୍କୁ ବିଶ୍ରନ୍ତ ଭାବେ ଅନୁସରଣ କରି ଚାଲିଥାଏ । ଆମ୍ବତୋଟା ମଝିରେ ଶୋଭିଥିବା ସରୁ ଧାଦଚଲା ରାସ୍ତା ଉପରେ, ପାଚିଲା ପତ୍ର ଆଉ ଆମ୍ବର ମହ ମହ ବାସ୍ନା ଭିତରେ ଗନ୍ଧ-ଗ୍ରାଇ ଓ ପବନରେ ଆମେ ଚାଲିଥାଉ । କିଛିବାଟ ଆସିବା ପରେ ଖାଇ ହଠାତ୍ ଟିକିଏ ଗଲେ ଓ ପଛକୁ ବୁଲିପଡ଼ି ମତେ କହିଲେ :

: ତୁ ଘରକୁ ଲେଉଟି ଯା ।

: ନାଇଁ

: କାହିଁକି ?

: ମୁଁ ଯିବନି ।

: କୁଆଡେ ଯିବୁ ତୁ ?

: ତମେ ଯୁଆଡ଼େ ଯିବ ।

: ମୁଁ ଯିବି ପାଛ ଧରି ।

: ମୁଁ ବି ଯିବି ।

: ପହଁରି ଜାଣିଛୁ ?

: ମୁଁ ଛୁଡ଼ା ହୋଇ ଦେଖିବି ।

: ଛୁଡ଼ାହୋଇ କଣ ଦେଖିବୁ ?

: ମୁଁ ମାଛଧରା ଦେଖିବି ।

ମୁଁ ଯିଦ୍ କଲାପରି ଠିଆ ହୋଇ ରହିଲି । ଖାଇ ମୋ ମୁହଁକୁ କିଛି ସମୟ ଚାହିଁ ରହିଲେ ଓ ତା'ପରେ ବୁଲିପଡ଼ି, ମତେ କିଛି ନ କହି ଚାଲିବାକୁ ଆରମ୍ଭ କଲେ । ମୁଁ ପୁନରାୟ ତାଙ୍କ ଅନୁଗାମୀ ହେଲି । କିଛିବାଟ ଯାଇ ଖାଇ ପୁଣି ଛୁଡ଼ା ହେଲେ, କହିଲେ : ହେଇ, ମୁ ଭଲରେ କହୁଛି ଫେରିଯା, ନହେଲେ ବାପା ବାଡ଼େଇବେ ।

: ନାଇଁ ।

: ତୁ କ'ଣ ମାଛ ଧରି ପାରିବୁ ଯେ ଯିବୁ ?
: ମୁଁ ମାଛ ଦେଖିବି ।
: ମାଛ ଦେଖିକରୁ କେଉଁ ଦେଖିବୁ ?
: ନାହିଁ । ମୁଁ ମାଛ ଦେଖିବି—ପାଣି ଭିତରେ ।
: ତା'ପରେ ନିଠାଭ୍ ମୋ ପାଖିରୁ ବାହାରି ଗଲ : ବମ ପରୀକ୍ଷା ଫଳ କଥା ମୁଁ ଘରେ କାହାକୁ କହିନ ।
ଭାଇ କହିଲେ : ହଉ ଚାଲ ।

ଏତଦ୍‌ପରେ ଭାଇ ଯାଇ ଯେଉଁଠାରେ ପହଞ୍ଚିଲେ ତାହା ଥିଲ କୃପାସିନ୍ଧୁ ମହାନ୍ତିଙ୍କ ବାଗିଚା । କୃପାସିନ୍ଧୁ ମହାନ୍ତି ଆମ ଅଞ୍ଚଳରେ ଜଣେ ଖ୍ୟାତନାମା ଓକିଲ ଥିଲେ ଓ ତାଙ୍କର ପ୍ରାସାଦୋପମ କୋଠାଘର ପଛପାଖେ ଗୋଟିଏ ପ୍ରଶସ୍ତ ବାଗ ଥିଲ । ସେହି ବାଗରେ ଥିବା ତାଙ୍କର ଶ୍ରେଷ୍ଠ ପୋଖରୀଟି ସେଦିନ ଉଚ୍ଛୁଳା ହେବାର ସ୍ଥିର ହୋଇଥିଲ ଓ ତେଣୁ ସେଥିରୁ ମାଛ ମାରିବା ମଧ୍ୟ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ଥିଲ ।

ଯଥା ସମୟରେ ବରିଷ୍ଠ ଉକିଲ କୃପାସିନ୍ଧୁ ମହାନ୍ତି, ତାଙ୍କର ସ୍ଥୁଳାଙ୍ଗିନୀ ସ୍ତ୍ରୀ, ଦୁଇ ପୁଅ—ଅଜିତ୍ ଓ ଆନନ୍ଦ (ଆନନ୍ଦ ଭାଇଙ୍କ ସାଥିରେ ଏକା ଶ୍ରେଣୀରେ ପଢ଼େ), ସାନ ଝିଅ – ହିରନ୍ ଓ ତାଙ୍କର ଦୁଇଜଣ ଚାକର ଆସି ଉପସ୍ଥିତ ହେଲେ । ଅଜିତ୍ ଦୂରରୁ ଦୌଡ଼ି ଦୌଡ଼ି ଆସି ଝପ୍ କିନା ପାଣି ଭିତରକୁ ଡେଇଁପଡ଼ି କରି କରି ଧୋଇ ହସି ଉଠ୍ ଉଠୁ ହଠାତ୍ କୃପାସିନ୍ଧୁ ମହାନ୍ତିଙ୍କ ସ୍ଥୁଳାଙ୍ଗିନୀ ସ୍ତ୍ରୀଙ୍କ ତୀକ୍ଷ୍ଣ ଧମକ୍ ତଥା କୃପାସିନ୍ଧୁ ମହାନ୍ତିଙ୍କ ଗୋଲକାର ନାଲ୍ ଆଖି ଦେଖି କାନ୍ଦ କାନ୍ଦ ହୋଇ ଉପରକୁ ଉଠି ଆସିଲ । ଏହାପରେ ଗୋଟିଏ ବେତଚେୟାର ଅଣାହେଲ ଓ କୃପାସିନ୍ଧୁ ମହାନ୍ତି ଅନତିଦୂରରେ ଜାମ୍‌କୁଲ୍ ଗଛ-ଗୁଳରେ ଚେୟାର ଉପରେ ଖବର କାଗଜ ହାତରେ ବସିଲେ । କୃପାସିନ୍ଧୁ ମହାନ୍ତିଙ୍କ ସ୍ଥୁଳାଙ୍ଗିନୀ ସ୍ତ୍ରୀ ଖଣ୍ଡରେ ଝାଳନାଳ ହୋଇ ତାଙ୍କର ଦୁଇଜଣ ହୃଷ୍ଟ ଚାକରଙ୍କୁ କେତୋଟି ନିର୍ଦ୍ଦେଶ ଦେଲେ ଓ ଏହାପରେ ପ୍ରଥମେ କୃପାସିନ୍ଧୁ ମହାନ୍ତିଙ୍କ ଦୁଇ ହୃଷ୍ଟ ଚାକର, ତା'ପରେ ଅଜିତ୍, ତା'ପରେ ଆନନ୍ଦ ଓ ତା'ପରେ ଭାଇଙ୍କ ଅଶାନ୍ତ ଅସ୍ଥିର ଅବସ୍ଥିତ ସ୍ପର୍ଶରେ ଶ୍ରେଷ୍ଠ ପୋଖରୀଟିର ଆଧାରସ୍ଥିର ନୀଳ ପାଣି ତରଙ୍ଗର ବୃତ୍ତମାନ ଖେଳାଇ କ୍ଷିପ୍ର ଗତିରେ ନୀଳରୁ ପାଣ୍ଡୁର, ପାଣ୍ଡୁରରୁ ଗୈରିକ ଓ ଶେଷରେ ଗୈରିକରୁ ତରଳ ମାଟି ରଙ୍ଗରେ ରୂପାନ୍ତରିତ ହୋଇଗଲ । ଶ୍ରେଷ୍ଠ ଶ୍ରେଷ୍ଠ ମାଛମାନ ଟୁପ୍‌ଟାପ୍ ବୁଡ଼ିଯାଇ ପୁଣି ମୁଣ୍ଡ ଟେକି ଲୁଚକାଳି ଖେଳିଲେ । ପାଣିବେଙ୍ଗ ସବୁ ଫଡ୍‌ଫାଡ୍ ଡେଇଁଲେ । କେତେବେଳେ ପାଣି ଭିତରେ ତ କେତେବେଳେ ଶୁଖିଲା ଭୂଇଁ ଉପରକୁ ତ କେତେବେଳେ କାହା ଅଣ୍ଟି ଭିତରକୁ ।

ମେଘଖଣ୍ଡ ମଝିରେ ମଝିରେ ଆକାଶରେ ଖସିଗଲେ ଓ ଗ୍ରେଟ ପୋଖରୀର ପାଣି ଉପରେ ଅନ୍ଧାର ଛାଇ ତ କେତେବେଳେ ତରଳ ରୁକ୍ଷ ରୂପ ସୃଷ୍ଟି ହେଲା ଓ ତାହାର ଭିତରେ ଥରେ ଗୋଟିଏ ଗ୍ରେଟ ମାଛ ମୋ ପାଦକୁ ଫାଙ୍କିକରି ଡେଇଁପଡ଼ି ପରମୁହୂର୍ତ୍ତରେ ପୁଣି ହସ୍ତ-ଚଞ୍ଚଳତାରେ ମିଳାଇଗଲା ପାଣି ଭିତରକୁ ଓ ସେହି କ୍ଷଣିକ ମୁହୂର୍ତ୍ତ ମଧ୍ୟରେ ସେହି ଚଞ୍ଚଳ ମାଛର ପିଠିରେ ପାଣି ଓ ସୂର୍ଯ୍ୟକିରଣର ସଙ୍ଘାତରେ ଅପୂର୍ବ ବର୍ଣ୍ଣିଳ ଚିତ୍ରମାନ ନାନା ରଙ୍ଗରେ ଝଲସି ଉଠି ପୁଣି ନିମିଷକେ ଅଦର୍ଶନ ହୋଇଗଲା ।

ତା'ପରେ ଆମେ ଯେତେବେଳେ ଘରକୁ ଫେରିଲୁ ସେତେବେଳେ ଦ୍ୱିପ୍ରହରର ଅତିକ୍ରାନ୍ତ ପ୍ରାୟ . ଭୟରେ କାକୁସ୍ଥ ଚିତ୍ତରେ ଆମେ ଘରେ ପଶିଲୁ ଓ ଦାଣ୍ଡଦୁଆରେ ଖବରକାଗଜ ହାତରେ ବାପା ଆମ ଉପରେ ଥରେ ଦୃଷ୍ଟି ବୁଲାଇ ନେଲେ ମାତ୍ର, କିଛି ବାକ୍ୟବାଦ କଲେ ନାହିଁ । ମାତ୍ର ଆମେ ଦୁଇଭାଇ ଖାଇସାରି ଚୁପ୍‌ଚାପ୍ ଶୋଇବା ଉପକ୍ରମ କରୁଥିବା ସମୟରେ ବାପା ହଠାତ୍ ଆମ ମୁଣ୍ଡ ବାଳକୁ ଝିଙ୍କି ପଚାରିଲେ : କୁଆଡ଼େ ଯାଇଥିଲ ? ମୁଁ ସ୍ଥିର କଣ୍ଠରେ କହିଲି : ମାଛଧରା ଦେଖି ।

ଭାଇ ଭୀତତ୍ରସ୍ତ ଭାବେ ନୀରବରେ ଛିଡ଼ା ହୋଇ ରହିଲେ ।

ବାପା ହଠାତ୍ ରୁକ୍ଷ କଣ୍ଠରେ 'କୁଆଡ଼େ, ମାଛଧରା ଦେଖି ?' କହି ଠାସ୍‌କରି ମୋ ଗାଲରେ ଗୋଟିଏ ଥାପଡ଼ ବସେଇ ଦେଲେ ଓ ତା'ପରେ ଭାଇଙ୍କୁ 'ଏଇଟା ନିଜେ ଗୋଟାଏ ବଜାଲି, ସମସ୍ତଙ୍କୁ ବଜାଲି କରିବ' କହୁ କହୁ ଗୋଟିଏ ଚୁଟରେ ପିଟି ଦେଇଗଲେ । ଏପରି କରୁଣ ମର୍ମାନ୍ତିକ ଦୃଶ୍ୟ ମୁଁ କେବେ କଳ୍ପନା କରି ନ ଥିଲି । ମତେ ଭାଇଙ୍କ ପାଇଁ ବହୁତ କଷ୍ଟ ହେଲା ।

× × ×

ସେଦିନ ଗଭୀର ରାତିରେ ସମସ୍ତେ ନିଦରେ ଶୋଇପଡ଼ିଥିବାବେଳେ ହଠାତ୍ କାହିଁକି କେଜାଣି ମୁଁ ବିଛଣା ଉପରେ ଉଠି ବସିଲି । ଖୋଲା ଝରକାବାଟେ ଆସୁଥିବା ଜହ୍ନର ଆଲୁଅରେ ବାପାଙ୍କ ମୁହଁକୁ ଅନେକ ସମୟ ଚାହିଁ ରହିଲି । ବାପାଙ୍କ ଆଖି କୋଟରଗତ ହେଉଥାଏ, ମୁହଁର ଚମ ଶିଥିଳ ଓ ରୁକ୍ଷ, ଦାନ୍ତସବୁ ଖରାପ ହୋଇ ଆସିଲାଣି; ଖୁବ୍ ଜୋର୍‌ରେ ଘୁଙ୍ଗୁଡ଼ି ମାରୁଥାନ୍ତି, ଆଁ ମେଲାଥିବା ପାଟିରୁ ଓଠଧାରେ ନାଳ ଗଡ଼ି ପଡ଼ୁଥାଏ । ଅନେକ ସମୟ ଚାହିଁ ରହିବା ପରେ ମତେ ହଠାତ୍ ଭୟ ମାଡ଼ିଲା । ମୁଁ ଫିକ୍‌କରି ହସିଦେଲି ଓ ତା'ପରେ ଶୋଇପଡ଼ିଲି ।

( ୧୯୭୬ )

# ଏକ ଶକ୍ତ ସମର୍ଥ ଚାଲି

ସାମ୍ନାର ଗଛ, ବଗିଖଣ୍ଡ ଓ କାନ୍ଥର ଛାଇ ସବୁ ଧୀରେ ଧୀରେ ଲମ୍ବି ଲମ୍ବି ଯାଉଥିବା ଦୃଶ୍ୟ ଦେଖି, ଓ ଗଛ, ଡସ୍ତା ତଥା ଅନତିଦୂରରେ ଦିଶୁଥିବା ଅସ୍ତାଚଳର ଉଜ୍ଜ୍ୱଳ ରଙ୍ଗ କ୍ରମଶଃ ମୁମୂର୍ଷୁ ହୋଇ ଆସୁଥିବାରୁ ମୋ' ଲଉଡ଼ି ବାଡ଼ି ଅଣ୍ଡାଳିବା ପ୍ରସ୍ତୁତ ହୋଇଗଲା ବୋଲି ଜାଣି ପାରିଲି । କେବେ ଯେ କେଉଁଠି ସେ ବସ୍ତୁଟିକୁ ରଖିଥାଏ, ଆଜିକାଲି ଆଉ ସ୍ମରଣ ରୁହେ ନାହିଁ ମୋର । ସୁତରାଂ, ସେହି କାଷ୍ଠ ବସ୍ତୁଟିର ଅନୁସନ୍ଧାନରେ ଛାତ ଉପରୁ ତଳକୁ ଓହ୍ଲାଇ ଆସୁ ଆସୁ ଦୋ' ମହଲା ସିଡ଼ି ମୁହଁରେ ଗୋଟିଏ ପ୍ରତିଚ୍ଛବି ଉପରେ ମୁହାଁମୁହିଁ ଆଖି ପଡ଼ିଯିବାରୁ ସାମାନ୍ୟ ନଇଁପଡ଼ି କିଛି ସମୟ ଛିଡ଼ା ହେଲି ସେଠାରେ । ସେହି ପ୍ରତିଚ୍ଛବିଟି କୌଣସି ଏକ ଲୋଳିତଚର୍ମ ବୃଦ୍ଧଙ୍କର, ଯାହାଙ୍କର ମୁଣ୍ଡବାଳ ସବୁ ପାଚିଲା, ଝୋଟ ପରି, ତମ୍ବା ବର୍ଣ୍ଣ ମୁହଁର ନିଃଶକ୍ତ ଚମ ଲେସ୍ତକରୁ ହୋଇ କୌଣସିମତେ ଝୁଲୁଥାଏ ଓ ଯାହାଙ୍କ ଆଖି ଦୁଇଟି ବିବର୍ଣ୍ଣ କାଚପରି ଦେଖା ଯାଉଥାଏ । ବୃଦ୍ଧଙ୍କ କାନ୍ଧ ଯେପରି ସାମାନ୍ୟ ଆନତ, ଆଖିର ମନୋଭାବ ବିପନ୍ନଭାବେ କରୁଣ । କିଛି ମାତ୍ରାରେ ଦୟାଭାବ ଆସିଥିଲେ ମଧ୍ୟ ମୁଁ ସେହି ବୃଦ୍ଧଙ୍କ ଆଡ଼େ ଚାହିଁ ଚମ୍କିବାପରି ହସିଲି । ବୃଦ୍ଧ ଜଣକ ମଧ୍ୟ ଅନୁରୂପଭାବେ ମତେ ଖତେଇ ହେବା ଭଙ୍ଗୀରେ ହସିଲେ ଓ ସେଇଥିପାଇଁ ସମ୍ଭବତଃ ମୁଁ ଡରିଗଲି ଓ ତରବର ପାଦରେ ସିଡ଼ି ପରେ ସିଡ଼ି ଓହ୍ଲାଇ ଆସୁ ଆସୁ ଡାକ ପକେଇଲି ।

: ଟିଟୁ, ଟିଟୁ, ମୋ' ବାଡ଼ି, ଜଲ୍‌ଦି, ଫୁର୍ତ୍ତି ।

: ଯାଉଛି ଅଜା ।

କେତୋଟି ମୁହୂର୍ତ୍ତ ଉତ୍ତାରୁ ଘର ଭିତରୁ ଟିଟୁର ଆବିର୍ଭାବ ଘଟିଲା । ପ୍ରଥମେ ବାଡ଼ିର ଠକ୍ ଠକ୍ ଆବାଜ ଆଗେଇ ଆସୁଥିବା ଶୁଣାଗଲା । ପରେ ପରେ ଟିଟୁ, ବୁଢ଼ାଙ୍କ ପରି ନଇଁ ନଇଁ ।

: ଚ'ଗଲା ।

ଏହି ଶବ୍ଦଟି ଅଦ୍ଭୁତ ଖୁକ୍ ଖୁକ୍ ହସ ମୋ' କାନରେ ବାଜିଲା । ମୁହଁ ବୁଲାଇଲି—ବାରଣ୍ଡା କଣରେ ଟିଟୁ ବୋଉ, ଅର୍ଥାତ ମୋ' ବଡ଼ବୋହୂ ଟର୍କିଶ୍ ଟାୱେଲ୍‌ରେ ମଣ୍ଟୁର ସ୍କୁଲ ବେକରୁ ପାଣି ପୋଛୁଛି ଓ ଟିଟୁକୁ ଚାହିଁ ହସୁଛି ।

ବାରଣ୍ଡାର ଦୁଇ ପ୍ରାନ୍ତ ଦୃଢ ଧରି ଠିକ ଉଚ୍ଚ ସୁଖ-ଶିମ୍ ପାଖରେ ମୋ' ବୁଢ଼ା ମନର ଦେଓ୍ୱାଲ୍ କଷ୍ଟ ମୋଟେ କ୍ଷଣିକ ପକାଶେ ସିଡ଼ିରେ ସ୍ଥାଣୁଜଳ ରହିଲା । ମୋ' ବୟସ (ଜନ୍ମ ୧୯୧୨, ଇଂରେଜ ସରକାରଙ୍କ ଅଧୀନରେ ନୌକରି ଆରମ୍ଭ ୧୯୩୬, ଦଶୁଡ଼ ନୌକରି ହିସାବରେ ବୃତ୍ତି ପ୍ରମୋଶନ-୧୯୩୯ ଓ ୧୯୪୨, ସ୍ୱାଧୀନ ଶ୍ରେଣୀସ୍ତ ଅଫିସରଙ୍କ ଦଶୁଡ଼ ପବ୍ଲିକ୍ ସର୍ଭ୍ୟାଣ୍ଟ୍ ବା ଜନ-ସେବକ ସ୍ତରେ କ୍ଷିପ୍ର ପ୍ରମୋଶନ୍, ପ୍ରଥମ ନିର୍ବାଚନ ଅବସ୍ଥା ୧୯୫୨, ତା'ପରେ ୧୯୫୭ ଓ ପୁନଶ୍ଚ ୧୯୬୨, ଅବସର ୧୯୬୩) ଚଳମାନ ହୋଇ ମୋ' ହାଡ଼ ମାଉଁସ ସାଥିରେ ଝୁଲୁଛି--ମୋ କଷ୍ଟ ସେଥିପାଇଁ ନୁହେଁ । ମୋ ଦୁଃଖ ଯେ ମୋ' କଷ୍ଟ ଉପରେ ମୋ ନିଜର ଦଖଲ ନାହିଁ । କାରଣ ମୋ ମନ ଭିତରେ ଯେତେ କିଛି ଦୁଃଖ କଷ୍ଟ ଲୁଚି ରହିଛି, ତା'ର କାରଣ କ'ଣ ଥାଇପାରେ ?

ଏଇ ସମୟରେ ବାହାରେ କାର୍‌ର ହର୍ଣ୍ଣ ଶୁଭିଲା, ମୁଁ ସିଡ଼ିରୁ ଓହ୍ଲାଇ ଆସି ଟିଙ୍କୁ ହାତରୁ ମୋ' ବାଡ଼ିଟି ନେଲି । ମୋ' ବଡ଼ପୁଅ ଅଫିସ୍‌ରୁ ଫେରିଲା, ଘର ଭିତରକୁ ପଶୁ ପଶୁ ଟିଙ୍କୁ ଦୌଡ଼ି ଯାଇ ବାପାଙ୍କ ଚର୍ବିଲ ପେଟରେ ଗୋଟିଏ ମୁଷ୍ଟି ଆଘାତ କରି ବାପାଙ୍କୁ ସ୍ୱାଗତ କଲା ଓ ତାହାର ଏହି ନିତ୍ୟ ନୈମିତ୍ତିକ ଆଚରଣରେ ଉପସ୍ଥିତ ସମସ୍ତେ ଖିଲ୍ ଖିଲ୍ ହୋଇ ହସି ଉଠିଲେ । ବଡ଼ବୋହୂ ହସରେ ଗଡ଼ିଯିବାପରି କହିଲା : ଠିକ୍ ହେଉଛି, କେତେଥର କହିଲିଣି ଘିଅ ଖାଇବା କମାଅ, ମାଙ୍କୁଆଡ଼ଙ୍କ ପରି ତ ଗୋଲେଇଲଣି ।

ମୋ ବଡ଼ପୁଅ ଅଳ୍ପ ଓରଫ୍ ଅଜୟ ସବୁ କଥାକୁ ଉପେକ୍ଷା କଲା ପରି ଡନ୍‌ଲପ୍ ସୋଫା ଉପରେ ହାତଗୋଡ଼ ମେଲାଇ ବସିପଡ଼ି ମୃଦୁ ମୃଦୁ ହସିଲା ମାତ୍ର । ତା'ପରେ ହଠାତ୍ ବ୍ୟସ୍ତ ହୋଇପଡ଼ିଲା : ଓଃ, ଫ୍ୟାନ୍ ଫ୍ୟାନ୍ ।

ଟିଙ୍କୁ ସୁଇଚ୍‌ବୋର୍ଡ଼ ନିକଟକୁ ଦ୍ରୁତ ଗତିରେ ଦୌଡ଼ିଯାଇ ଦୁଇ ତିନିଥର ସୁଇଚ୍ ଅଫ୍ ଅନ୍ କରି ହାତ ହଲେଇ କହିଲା : ଲାଇନ୍ ନାହିଁ ।

ମୋ' ବଡ଼ପୁଅ ପାଟିରୁ 'ରାସ୍କେଲ୍ ବିଜୁଳି ଡିପାର୍ଟମେଂଟ' ଛୁଟିକି ବାହାରିଗଲା ।

ମୁଁ ବାଡ଼ି ହାତରେ ଦୁଆର ଆଡ଼କୁ ଆଗେଇ ଯାଉ ଯାଉ କହିଲି :

: ଟିଙ୍କୁ, ମୁଁ ବୁଲିଲି ।

: ଓଃ ନୋ ନୋ, ମୁଁ ଯିବି : କହୁ କହୁ ଟିଙ୍କୁ ଦୌଡ଼ି ଆସୁ ଆସୁ ଚିତ୍କାର-କରି ଜଣେଇଦେଲା : ମମି, ମୁଁ ଯାଉଛି, ଇଭିନିଂ ଓ୍ୱାକ୍ ।

ବାହାରେ ଏବେ ପୁରା ସନ୍ଧ୍ୟା ଘୋଟି ଯାଇନ, ଅନ୍ଧାର ଘଡଳା ହୋଇ ଘ୍ରଇ ଆସୁଚ ମାତ୍ର । ବଣଖଣ୍ଡ ଦେବୁ ନଷ୍ଟ୍ରିସ୍ତ ଅମଲଙ୍କ ଘର ହୁଡା ହୋଇ ରହି-ଛନ୍ତି । ଚାଲୁ ଚାଲୁ ଟିଣ୍ଟୁ ହଠାତ୍ ଗୋଟିଏ ପ୍ରଶ୍ନ କଲା :

ଅଜା, ତମେ ବଡ଼ ଚାକିରି କରୁଥିଲ ନା ବାପା ବଡ ଚାକିରି କରନ୍ତି ?

ମୁଁ କିଛି ଉତ୍ତର ଦେବା ପୂର୍ବରୁ ସେ ଭାରି କୌତୁହଳରେ ପୁଣି ପଚାରିଲା : ବଡ଼ ଚାକିରି କାହାକୁ କହନ୍ତି ? ବେଶୀ ଦରମା ପାଇଲେ ?

ରାସ୍ତାରେ ବତୀ ଜଳିଲଣି । ଅନ୍ଧାରରେ ଆଉ ବେଶୀ ଦୂର ଯିବା ଉଚିତ ହେବନି ମନେକରି ମୁଁ ଟିଣ୍ଟୁକୁ କହିଲି : ଚାଲ୍, ଏଇଠି ଜଣଙ୍କ ଘରକୁ ଯିବା ।

ଶୁଣିଥିଲି ଅନନ୍ତଙ୍କ ସ୍ୱାସ୍ଥ୍ୟ ଅସୁସ୍ଥ । ଏକା ଅଛି । ବହୁତ ଦିନ ହେଲା ଦେଖା କରିନି ।

ଘର ଭିତରୁ ମହମବତୀର କ୍ଷୀଣ ଆଲୋକ ଭାସି ଆସୁଥିଲା । ଟିଣ୍ଟୁ ପଚାରିଲା : ଅଜା, ଏଇଟା କାହା ଘର ?

ମୁଁ କୌତୁକରେ କହିଲି : ଜଣେ ବଡ ମନ୍ତ୍ରୀଙ୍କ ଘର । ମୋ ସାଙ୍ଗ ।

ଟିଣ୍ଟୁର କୌତୁହଳ ହଠାତ୍ ବଢ଼ିଗଲା : ତମ ସାଙ୍ଗ ? ବଡ଼ ମନ୍ତ୍ରୀ ? ବଡ଼ ଚାକିରି କରୁଥିଲେ ? କେତେ ଦରମା ପାଉଥିଲେ ?

ମୁଁ ରହସ୍ୟମୟ ଭାବେ ହସିଲି । କବାଟରେ ଠକ୍ ଠକ୍ କଲି । ଭିତରୁ ଗୋଟିଏ ଗମ୍ଭୀର ସ୍ୱର ଭାସି ଆସିଲା : ଖୋଲା ଅଛି ।

ଟିଣ୍ଟୁ ଭାରି ଆଗ୍ରହରେ ମୋ ପଛେ ପଛେ ଘର ଭିତରକୁ ପଶିଲା । ଜରାଜୀର୍ଣ୍ଣ ଘର । ସ୍ୱାସ୍ଥ୍ୟ ଜରାଜୀର୍ଣ୍ଣ । ଘରସାରା ଯେପରି ଗୋଟିଏ ପ୍ରାଚୀନ ଗନ୍ଧ ଘେରି ରହିଥାଏ । ମହମବତୀର କ୍ଷୀଣପ୍ରଭ ଆଲୋକରେ ଅସ୍ପଷ୍ଟ, ଅତି ପୁରାତନ ଗୋଟିଏ ଚେୟାର୍, ଚେୟାରକୁ ଲାଗି ଗୋଟିଏ ଟେବୁଲ୍, ଟେବୁଲ ଉପରେ ଇତସ୍ତତଃ ସ୍ତୂପୀକୃତ ବହିଖାତା, ଓ ଏ ସବୁର ଉହାଡ଼ରେ ଗୋଟିଏ ଖଟିଆ ଓ ଖଟିଆ ଉପରେ ଶାୟିତ ଆବୃତ ଅସ୍ପଷ୍ଟ ଏକ ମୂର୍ତ୍ତି ଦୃଶ୍ୟମାନ ହେଲା ।

: କିଏ ?

ବହୁଯୁଗ ସେପାରିରୁ ଗୋଟିଏ ସ୍ୱର ଭାସି ଆସିଲା ଯେପରି ।

: ମୁଁ ।

: ଓଃ ହୋଃ ହୋଃ, ସେଇଟି କିଏ ? ନାତି ? ହାଃ ହାଃ; ବାଃ ବାଃ · ଭାରି ଖୁସି ହେଲି, ଭାରି ଖୁସି ହେଲି (ଅନନ୍ତଙ୍କ ଧୀରେ ଧୀରେ ଖଟିଆ ଉପରେ ଉଠି

ବସିଲା । ତା'ପରେ ଟିଟୁ ଆଡ଼କୁ ହାତ ବଢ଼େଇ ଦେଲା ...You, the man of my dreaming generation, Come, Come, to me....ଆସ ବାବା, ଆସ....ହାଃ ହାଃ ହାଃ ଏଇ ହାତ ବଢ଼େଇ ଦେଉଚି ମୁଁ ।

ଟିଟୁ ହତଚକିତ ହୋଇ ମୋ' ମୁହଁକୁ ଚାହିଁଲା । ମୁଁ କହିଲି : ଯା', ଅଜା ପରା ।

ମାତ୍ର ଅନିରୁଦ୍ଧଙ୍କର ପ୍ରସାରିତ ହାତ ଦୁଇଟି, ଶିଥିଳ ହସ ତଥା ବିଚିତ୍ର ନାଟକୀୟ ହାବଭାବ ଦେଖି ଟିଟୁ ଡରିଗଲା । ମୋ' ପାଖକୁ ଘୁଞ୍ଚି ଆସି ବିସ୍ଫାରିତ ଆଖିରେ ଅନିରୁଦ୍ଧଙ୍କୁ ଚାହିଁ ରହିଲା ।

: ହାଃ ହାଃ, ବେଟା ଡରି ଯାଉଚି ! ହେଃ ହେଃ ହେଃ ଭାରି ଖୁସି ହେଲି, ଭାରି ଖୁସି ହେଲି, ବାଃ, ଭାରି ସୁନ୍ଦର ନାଟ ହେଉଚିରେ ତୋ'ର । ହେଇ ବେଟା.... ଡରୁଚୁ କାହିଁକି ? ମଲା ମଣିଷ ପରି ଦିଶୁଚି ମତେ, ନାହିଁ ? ହେଃ ହେଃ, ଆରେ ବେଟା' ମୋ ହାଡ଼ କଙ୍କାଳ ସିନା ଦେଖୁଚୁ, ମୁଁ ମରିନି । ଆ' ମୋ' ପାଖକୁ ଦେଖ୍ ମୋ' ଦେହରେ ହାତ ଦେଇ ମୋ' ରକ୍ତ କେମିତି ଏବେବି ଗରମ୍ ଅଛି, ଲାଲ ଅଛି, ବେଟା ବୁଝିଲୁ, ଲାଲ୍ । ହାଃ···ହାଃ·· ହାଃ....କିରେ ତୁ ବି' ଡରି ଗଲୁ ନା କ'ଣ ? ନିଶ୍ୱାସ ବନ୍ଦ କରି ବସିଛୁ ?

ମୁଁ ଚମକି ପଡ଼ି କ'ଣ କହିବି ବା ନ କହିବ ଭାବି ଇତସ୍ତତଃ କରୁ କରୁ ହଠାତ୍ ହୋ ହୋ ହୋଇ ହସି ଉଠିଲି. ଯୋଉଠି ସତକୁ ସତ ଅନିରୁଦ୍ଧଙ୍କୁ ମୁଁ ବି ଗୋଟାଏ ମଲା ମଣିଷ ବୋଲି ଭାବିଥିଲି ।

ହସ ଥମିଲା । ଅନିରୁଦ୍ଧ ଗୋଟିଏ ଦୀର୍ଘ. ନିଃଶ୍ୱାସ ତ୍ୟାଗ କଲେ ।

: ତୋ' ଦେହ କେମିତି ଅଛି ?

: ଭଲ, ଖୁବ୍ ଭଲ । କୋଇ ଗୋଲ୍‌ମାଲ୍ ନାହିଁ ।

: ମତେ ମିଛ କହୁ ନାହିଁ ?

: ମିଛ ନୁହେଁ, ଖାଣ୍ଟି ସତ, ଅସଲ ସତ, ତୁ ସତ ମିଛ ବୁଝିପାରୁନ, ଏଇ କହିବ, କିରେ ବେଟା ମୁଁ ମିଛ କହୁଛି ?

ଟିଟୁ ଏଥର ସ୍ୱାଭାବିକ୍ କଥାବାର୍ତ୍ତାରେ କିଛି ସାହସ ପାଇଲାପରି ହସି ଦେଲା ।

ମୁଁ କହିଲି : ହାଡ଼ କଙ୍କାଳ ତ ଦିଶିଲଣି । ଦେହଟା ଭଲ ରହିଲା କୋଉଠି ?

ଅନନ୍ତ ହସିଲା : ହାଃ ହାଃ, ହାଃ କଙ୍କାଳ ପରି ସଢ଼ି ଗଲେବି ମୁଁ ଭଲ ରହିବି । ସେ ସବୁ ଗୂଢ଼ ରହସ୍ୟ । ଇତିହାସ ଲେଖା ଗ୍ରନ୍ଥଥିଲା, ମୁଁ ଭଲ ନ ରହିଲେ ଚଳିବ ? ଆଜି ଯାଉଛ, ପଢ଼ିବୁ ? ରହ, ମୁଁ ଆସୁଛି ।

ଅନନ୍ତ ଉଠି ଛିଡ଼ା ହେଲା ।

ମନ୍ଦମନ୍ଦତର ଅସ୍ପଷ୍ଟ ଆଲୋକରେ, ଦୁର୍ବଳ, କଙ୍କାଳସାର ମାତ୍ର ଦୀର୍ଘକାୟ, ସଳଖ ଗ୍ରସ୍ତା ମୂର୍ତ୍ତିଟେ ଶକ୍ତ, ସମର୍ଥ, ନିଶ୍ଚିତ ପାଦରେ ଧୀରେ ଧୀରେ ଆଲମାରି ଆଡ଼କୁ ଆଗେଇ ଗଲା ଓ ତା'ପରେ ଗୋଟିଏ ପାଣ୍ଡୁଲିପି ହାତରେ ପୁଣି ଶକ୍ତ, ସମର୍ଥ ନିଶ୍ଚିତ ପାଦରେ, ଉଲେମାତ୍ର ଅନତ ନ ହୋଇ ଧୀରେ ଧୀରେ ଆମ ଆଡ଼କୁ ଆଗେଇ ଆସିଲା ।

ମତେ ପାଣ୍ଡୁଲିପିଟି ବଢ଼େଇ ଦେଇ ଦେଉ ଅନନ୍ତ ହାତ ଫେରାଇ ନେଲା : ନା, ତୋତେ ନୁହେଁ । ତୁ ବଗଡ଼ା । ଏଇ-ଏଇ ବେଟା ହାତକୁ ମୁଁ ବଢ଼େଇଦେବ ।

ଅନନ୍ତ ନିକଟରୁ ଫେରିବାବେଳେ ମୁଁ ଅଣ୍ଟାରେ ତାକୁ କହିଲି : ବୁଝିଲୁ, ତୁ ଜୀବନସାରା ମାଷ୍ଟ୍ର ହୋଇ ହିଁ ରହିଲୁ ।

ଅନନ୍ତ ହାଃ ହାଃ ହୋଇ ହସିଲା ।

ଘରକୁ ଫେରିଆସି ସିଡ଼ି ଦେଇ ମୋ' ଉପର ମହଲର ବଖରାକୁ ଯାଉ ଯାଉ ହଠାତ୍ ତଳୁ ଅଦ୍ଭୁତ ଖିଲ୍ ଖିଲ୍ ହସ ଶୁଭିଲା । କ'ଣ ହେଲା ବୋଲି ଝରକା-ପଟୁ ଦେଖିଲି ଟିଟୁବୋଉ ଓ ଟିଟୁବାପା ହସି ହସି ଚକଟାଡ଼ି ପଡ଼ି ଗଡ଼ଯାଉଥାନ୍ତି । ଟିଟୁ ବୋଉ କହିଲା : ଦେଖ ପୁଅକୁ, ଆଜି ପୁଣି ଆଉ ଗୋଟାଏ ଫେଚକାମି ବାହାରିଲା ।

କଣ ହେଲା ଦେଖିବା ପାଇଁ ଆଗ୍ରହରେ ମୁଁ ଆଉ ଗୋଟିଏ ସିଡ଼ି ଓହ୍ଲାଇଲି । ଝରକାପଟୁ ଏଇ ଦୃଶ୍ୟଟି ଦେଖିଲି : ଟିଟୁ ଗମ୍ଭୀର ହେବାର ଅଭିନୟ କରି ବାରଣ୍ଡାର ଏ ପ୍ରାନ୍ତରୁ ସେ ପ୍ରାନ୍ତକୁ ଶକ୍ତ, ସମର୍ଥ, ଧୀର ପଦକ୍ଷେପରେ, ସଳଖ ହୋଇ, ଥରେ ଆଗେଇ ଯାଉଥାଏ ଓ ସେହିପରି ପଦକ୍ଷେପରେ ପୁଣି ସେ ପ୍ରାନ୍ତରୁ ଏ ପ୍ରାନ୍ତକୁ ଫେରି ଆସୁଥାଏ ।

ହଠାତ୍ ମୋ' ଭିତରେ ଗୋଟିଏ କଷ୍ଟ ବା ଭୟ ବା ଶଙ୍କା ବା ଲଜ୍ଜା— କ'ଣ ଗୋଟିଏ ଯେପରି ଘୋଟିଗଲା ଓ ତା'ପରେ ତରବର ହୋଇ ମୁଁ ମୋ' ଉପର ମହଲାର ନିର୍ଜନ ବଖରାକୁ ଦ୍ରୁତ ପଳେଇ ଆସିଲି ।

(୧୯୭୯)

# ବାପାଙ୍କ ବଣି ଆଙ୍ଗୁଠି

ମନେ ପଡ଼ୁଛି ପିଲାଦିନେ ଥରେ ଗାଁରେ 'ଜନନୀ' ନାଟକ ଦେଖିବାକୁ ଯାଇଥିଲି । ବାପାଙ୍କ ସାଙ୍ଗରେ । ଅନ୍ଧାର ରାତି । ଖୋଲା ପଡ଼ିଆ ମଝିରେ ଆମେ ଚାଲିଥାଉ । ପଡ଼ିଆଟିର ଓସାର ଆଉ ଲମ୍ବ ଆଖି ଅପହଞ୍ଚ । ଚାରିପଟେ ଗୁଡ଼ୁ ଗୁଡ଼ୁ ଅନ୍ଧାର । ପାଖରେ ବା ଦୂରରେ, ଠିକ୍ ବାରି ହେଉ ନ ଥିଲେ ବି ଗଛ ପତ୍ର ଥିଲା । ମଝିରେ ମଝିରେ ପତ୍ର ମଧ୍ୟରୁ ଜୁଳୁଜୁଳିଆ ପୋକ ଉଡ଼ି ଯାଉଥାଏ । ଝିଂକାରି କିଛି ସମୟ ଧରି ଝିଁ ଝିଁ କରୁଥାଏ । ନିଧୋଉ ନିକାଞ୍ଚନ ଜାଗା । ମନରେ କିନ୍ତୁ ଆଦୌ ଡର ମାଡ଼ୁ ନ ଥାଏ । କାରଣ ସାଙ୍ଗରେ ବାପା ଥାଆନ୍ତି । ବାପାଙ୍କ ବାଁ ହାତରେ ଟର୍ଚ୍ଚ ଏବଂ ଡାହାଣହାତର ବଣି ଆଙ୍ଗୁଠି ମୋ' ହାତ ମୁଠାରେ । ଟର୍ଚ୍ଚର ଆଲୁଅ ପଡ଼ିଆ ମଝିରେ ଥିବା ପାଦଚଲା ରାସ୍ତାଟିକୁ ସ୍ପଷ୍ଟ କରି ଦେଉଥାଏ । ସେଇ ରାସ୍ତାରେ, ଟର୍ଚ୍ଚର ଗୋଲେଇ ଆଲୁଅରେ ମୁଁ ବାପାଙ୍କ ପାଦ ସଙ୍ଗେ ପାଦ ମିଳାଇ ସତର୍କ ଭାବେ ଚାଲୁଥାଏ । ଆଉ ବେଳେ ବେଳେ, ମୋର ବଦଭ୍ୟାସ ବଶତଃ, ଏଣେ ତେଣେ ଚାହିଁ ଦେଉଥାଏ, କି ଉପରକୁ ମାନେ ଆକାଶକୁ ଅନେଇ ଅନେଇ କିଛି ସମୟ ଚାଲେ, ଦେଖେ ତାରାଗୁଡ଼ାକ ବି ମୋ' ସାଙ୍ଗେ ସାଙ୍ଗେ ଘୁଞ୍ଚି ଯାଉଥାନ୍ତି ନା ନାହିଁ । ତାରାମାନଙ୍କୁ ଚାହୁଁ ଚାହୁଁ ମୋ' ଅଜାଣତରେ କେତେ ଥର ମୁଁ ସେଇ ଆଲୁଅର ବୃତ୍ତ ବାହାରକୁ ଚାଲି ଆସୁଥିଲି, ଯେଉଁଠାରେ ରାସ୍ତା ଅଦୃଶ୍ୟ, ଘନ ଅନ୍ଧାର କେବଳ. ଆଉ କିଛି ନ ଥାଏ, ମୋ' ହାତ ମୁଠାରେ ଥିବା ବାପାଙ୍କ ବଣି ଆଙ୍ଗୁଠି ସେତେବେଳେ ମତେ ଟାଣି ନେଇଯାଏ ସେଇ ଆଲୁଅର ଘେର ଭିତରକୁ । ପ୍ରତିଥର ଏହିପରି ସ୍ପଷ୍ଟ ରାସ୍ତା ଉପରେ ପାଦ ପକାଉ ପକାଉ ମୁଁ ଘେର ବାହାରର ସେଇ ଅନ୍ଧାରକୁ ଚାହୁଁଥିଲି ଆଉ ଭଲେ ବୋଇଲେ ! ମୋ' ଲୋମ ସବୁ ଭୟରେ ଟାଙ୍କୁରି ଉଠୁଥିଲା । ବାପାଙ୍କ ବଣି ଆଙ୍ଗୁଠିକୁ ସେତେବେଳେ ମୁଁ ଶକ୍ତକରି ଧରି ରଖୁଥିଲି ।

ଆଉ ବାପାଙ୍କ ସାଙ୍ଗରେ ଆମେ, ଭାଇମାନେ ଯେତେବେଳେ ଯାଉ, ତୁନି ତାନି କେହି ଚାଲୁ ନା । ବାପା କିଛି ନା କିଛି କହୁଥାନ୍ତି, ଆମେ ଶୁଣୁ, ବୁଝୁ ବା ନ ବୁଝୁ, ବା ଆମେ କିଛି ନା କିଛି ପଚାରୁ, ଯାହା କିଛି ଅବୋଧ୍ୟ ଆମ ଆଖିର ପରିସର ମଧ୍ୟକୁ ଆସିଯାଏ, ଯେପରି ବାପା ତାଳଗଛ ଗୁଡ଼ିକ ଏତେ ଡେଙ୍ଗା କାହିଁକି ? ଅନ୍ୟ ଗଛମାନଙ୍କର ଭଳି କେତେ ଶାଖା ପ୍ରଶାଖା ବାହାରିଛି. ଚଢ଼ିବାକୁ କେତେ ସୁବିଧା, ଦୋଳି ଖେଳ ହୁଏ, ଡାଳ ମାଙ୍କୁଡ଼ି ଖେଳ ହୁଏ,

ତାଲ ଗଛର ଏମିତ କାହିଁକି ? ବାପା ଜାଣିଥିଲେ ଉତ୍ତର ଦିଅନ୍ତି । ଅଜଣା ଥିଲେ ବିରକ୍ତ ହୁଅନ୍ତି ନାହିଁ । ଆମ ପରି ପିଲା ହୋଇଯାନ୍ତି ସେତେବେଳେ । ଗୁଲୁ ଗୁଲୁ ହୋଇ ଠିଆହୋଇ ପଡ଼ନ୍ତି, ମୁଣ୍ଡ ଉପରକୁ ଟେକି ତାଳଗଛ ଶିଖକୁ ଅନାନ୍ତି, ଟାଣ ଖରା ଥିଲେ କଚ୍ଛପିଁଷ୍ଟ ମୁଦ୍ରାରେ ଭ୍ରୁଲତା ଉପରେ ହାତ ପାପୁଲି ରଖି କୁହନ୍ତି— "ଆରେ ସତେ ତ ।" ଅଥବା ଉଇଲିୟମ ଜୋନ୍ସ୍‌ର ମା'ପରି କୁହନ୍ତି—"ପଢ଼ିଲେ ଜାଣିବୁ, ବାପା ।"

ସେ ଦିନ, ଟେଣ୍ଟ ଆଲୁଅରେ ସର୍ତ୍ତ ସ୍ଥିର ଅଟେ ଗୁଲୁଥାଉ । ବାପା ପଚାରିଲେ—"ଜାନକୀ କିଏ ଜାଣିଚୁ ?" ମୁଁ କହିଲି—"ହଁ ଜନକଙ୍କ କନ୍ୟା ଜାନକୀ ।" ବାପା ପଚାରିଲେ, "କିଏ ସେ ?" ମୁଁ କହିଲି "ସୀତା ସିଏ" । ବାପା ଖୁସି ହେଲେ, ଏବଂ ନାଟକର ଶେଷ ଦୃଶ୍ୟରେ କପରି ପୃଥିବୀ ଦ୍ୱିଧା ବିଭକ୍ତ ହୋଇଯିବ ଆଉ ସୀତାଙ୍କର ପାତାଳ ଗର୍ଭରେ ପ୍ରବେଶ ଘଟିବ, ସବୁ ଗୋଟି ଗୋଟି କରି କହିଗଲେ । ମତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ପ୍ରଥମେ 'ଦ୍ୱିଧା ବିଭକ୍ତ' ଅର୍ଥ କ'ଣ ମୁଁ ଠିକ୍ ବୁଝି ପାରିଲି ନାହିଁ । ବାପାଙ୍କୁ ପଚାରିଲି । ବାପା ତତ୍କ୍ଷଣାତ୍ ଠିଆ ହୋଇପଡ଼ିଲେ, ତା'ପରେ ମୋ' ହାତ ମୁଠାରୁ ତାଙ୍କର ବାଁ ଆଙ୍ଗୁଠି ମୁକୁଳାଇ ନେଲେ ( ସେଇ ମୁହୂର୍ତ୍ତ କେତୋଟି ମତେ ଭାରି ଡର ମାଡ଼ିଲା) ଆଉ ଦୁଇ ହାତରେ ଦେଖେଇ ଦେଲେ ଯେ ପୃଥିବୀ ଦୁଇ ଫାଙ୍କ ହୋଇଯିବ । ମୋତେ ଆତ୍ମକୁ ଆଚମ୍ବିତ ଲାଗିଲା । ପଚାରିଲି—"ବାପା; କେମିତି ହବ ?" ବାପା କହିଲେ— "ଦେଖିବୁ ।" ପଚାରିଲି—"ସୀତା କି ପାତାଳକୁ ଯିବେ ?" ବାପା କହିଲେ "ହଁ ।"

—"ଡ୍ରାମାରେ କି ?"

—"ହଁ ।"

ମୁଁ ବିଶ୍ୱାସ ନ କରିପାରି ପୁଣି ଥରେ ପ୍ରଶ୍ନ କଲି —"ବାପା, କେମିତି ?"

ବାପା କହିଲେ—"ଦେଖିବୁ ।"

ନାଟକ ଆରମ୍ଭ ହେଲା । ମୁଁ ଆକୁଳ ନୟନରେ ରହିଁ ରହିଲି—ସେଇ ଶେଷ ଦୃଶ୍ୟଟି ପାଇଁ—ପୃଥିବୀ କପରି ଦ୍ୱିଧା ବିଭକ୍ତ ହେବ ? ସୀତା ପାତାଳକୁ ଯିବେ କେମିତି ?—ସ୍ୱପ୍ନ ଦେଖିବା ଆଶାରେ ମୁଁ ଅପଲକ ଆଖିରେ ରହିଁ ରହିଲି —ମଝିରେ, ଲବ କୁଶଙ୍କର ଅଶ୍ୱମେଧ ଯଜ୍ଞବେଳେ ଆଖିପତା ମୁଦି ହୋଇ ଆସୁଥିଲା, ମୁଁ ଖୁବ୍ ଜୋର୍‌ରେ ଦି' ତିନିଥର ମୁଣ୍ଡକୁ ଝାଙ୍କି ଦେଲି, ଆଖିକି ଦଳିଲି, ଏବଂ ଜବରଦସ୍ତ ଆଖିପତା ଖୋଲି ରଖିବାପାଇଁ ପ୍ରାଣପଣେ ଚେଷ୍ଟା କରିବାକୁ ଲାଗିଲି ।

ଶେଷରେ ପୃଥିବୀ ମାତାଙ୍କ ପାଖରେ ସୀତାଙ୍କ କରୁଣ ମିନତି ଦୃଶ୍ୟ—ମୁଁ ଆଉ ଉତ୍କଣ୍ଠା ଚାପି ରଖି ପାରୁନଥିଲି, ବସିବା ସ୍ଥାନରୁ ଠିଆ ହୋଇ ପଡ଼ିଲି—ଆଉ ତା'-ପରେ ସୀତାଙ୍କ ସ୍ୱଗତୋକ୍ତି ଶୁଣି ପାରିଲି ଯେ ପୃଥିବୀ ମାତା ଦ୍ୱିଧା ବିଭକ୍ତ ହୋଇ ଯାଉଛନ୍ତି—ସୀତା ମାତା କୋଳରେ ଆଶ୍ରୟ ଲଭିବାକୁ ଯାଉଛନ୍ତି—ମୋ' ଆଖି କାନ ମନ ସବୁ ଅଦ୍ଭୁତ ଭାବେ ସଜାଗ ହୋଇ ଉଠିଲା—କେମିତି ? ସୀତା ପାତାଳକୁ ଯିବେ ? ମୁଁ ରୁଦ୍ଧ ଶ୍ୱାସରେ ଚାହିଁ ରହିଲି ମଞ୍ଚ ଉପରକୁ, ଅଥଚ ଆଶ୍ଚର୍ଯ୍ୟ ମଞ୍ଚର ଆଲୁଅ ସବୁ କ୍ରମେ କମି କମି ଆସୁଥାଏ, ଆଉ ଶେଷରେ ହଠାତ୍ କିଛି ଘଟିବା ପୂର୍ବରୁ, ଡ୍ରପ୍‌ସିନ୍ ବାଜିଲା ସାଙ୍ଗେ ସାଙ୍ଗେ ଡ୍ରପ୍ ପଡ଼ିଗଲା ।

ମୁଁ ତଟସ୍ଥ ହୋଇ ଠିଆହୋଇ ରହିଲି । ବାକ୍‌ରୁଦ୍ଧ । କିଛି ବୁଝି ପାରିଲିନି । ଦର୍ଶକ ଆସନ କ୍ରମେ କ୍ରମେ ଖାଲି ହୋଇଗଲା । ବାପା ପାଖର କାହା ସାଥିରେ କଥାବାର୍ତ୍ତା କରୁଥିଲେ । ସେ ଲୋକଟି ଚାଲିଗଲା । ବାପା ଟର୍ଚ୍ଚର ସୁଇଚ୍ ଟିପିଲେ ଆଉ ତାଙ୍କର ଡାହାଣ ହାତର କଣି ଆଙ୍ଗୁଠି ବଢ଼େଇ ଦେଲେ । କହିଲେ—"ଚ'ଲ ଯିବା ।"

ମୁଁ ତାଙ୍କ ହାତ ଛୁଆଡ଼ି ଦେଲି । ଅନ୍ଧାରରେ ସେଇ ଖୋଲା ପଡ଼ିଆ ମଝିରେ ଦମ ଦମ ହୋଇ ଆଗେ ଆଗେ ମାଡ଼ି ଚାଲିଲି । ବାପା ପ୍ରାୟ ଦୌଡ଼ିଲା ପରି ମୋ ପଛେ ପଛେ ଆସୁଥାନ୍ତି ଆଉ କହୁଥାନ୍ତି—"ଆରେ ଆସ୍ତେ ଚାଲ୍ ଏତେ ଜୋର୍‌ରେ ଚାଲିଲେ ମୁଁ ତୋ' ସାଙ୍ଗେ ପାରିବି ? ନିଦ ମାଡ଼ିଲାଣି ?"

ଅଉ ସାନପିଲା ମୁଁ କେତେ ବାଟ ବା ଅନ୍ଧାରରେ ଦୌଡ଼ିଥାନ୍ତି । ଅଗତ୍ୟା ଅସହାୟ ଭାବେ ଠିଆହୋଇ ପଡ଼ିଲି । ପଥୁରିଆ ପଡ଼ିଆରେ ଦି' ତିନିଥର ଗୋଡ଼ କଚାଡ଼ିଲି । ପଛରୁ ବାପା ତାଙ୍କର କଣି ଆଙ୍ଗୁଠି ବଢ଼େଇ ଦେଲେ । ମୁଁ ପୁଣି ଥରେ ତାଙ୍କ ହାତ ଛୁଆଡ଼ି ଦେଲି । ବାପା ପୁଣି ଥରେ ପଚାରିଲେ—"ନିଦ ମାଡ଼ିଲାଣି ?"

( ୧୯୭୫ )

# ଭୟଙ୍କର ରାତି

ଗଳିର ପଶ୍ଚିମ କୋଣରେ ଗୋଟିଏ ପ୍ରକାଣ୍ଡ ଦୁଇମହଲା କୋଠାଘର; ପ୍ରାଚୀନ ହେବାଓ, ଅଦ୍ୟାପି ମଜବୁତ୍ । ସ୍ଥାନେ ସ୍ଥାନେ ପଲସ୍ତରା ଖସି ପଡ଼ିଥିବାରୁ ଆବୁଡ଼ା ଖାବୁଡ଼ା ପଥର ଆଖିରେ ପଡ଼େ । ଶିଉଳିଆ କାନ୍ଥ ଫଟାଇ ଗୁଡ଼ିଏ କଣରୁ ଦୁଇ ତିନିଟା ଓସ୍ତଗଛ ମଧ୍ୟ ବେଶ୍ ଦୃଶ୍ୟମାନ । ସୂର୍ଯ୍ୟାସ୍ତ ହେଲାମାତ୍ରେ ଆଖି ପିଛୁଳାକେ ଅନ୍ଧାର ଡିଆଁ ମାରି ଗଳିର ରାସ୍ତା ଉପରେ ଚତ୍ ହୋଇ ଶୋଇପଡ଼େ । ରାସ୍ତାଟି ଅତ୍ୟନ୍ତ ସଙ୍କୀର୍ଣ୍ଣ । ରାସ୍ତା କଡ଼ର ନାଳରୁ ଦୁର୍ଗନ୍ଧ ବାହାରେ । ମଶାମାନେ ଭଣ ଭଣ କରନ୍ତି । ସନ୍ଧ୍ୟାବେଳେ ତେଣୁ ପ୍ରାୟ ପ୍ରତି ଘରର ଖୋଲା ଝରକା ଓ ଦୁଆର ଦେଇ ଝୁଣା ଧୂଆଁର କୁଣ୍ଡଳୀ ଧୀରେ ଧୀରେ ଗଳିସାରା ଅନ୍ଧାରୁଆ କରିଦିଏ । ସେଇ ଧୂଆଁ ଭିତରେ ଦୁଇଜଣ ଯୁବକ ଦ୍ରୁତ ଗତିରେ ଗୋଟିଏ ଘର ଭିତରକୁ ପ୍ରବେଶ କଲେ । ସେଥିରୁ ଜଣେ ଯୁବକ, ଡେଙ୍ଗା ଓ ପତଳା, ଉଚ୍ଚ କଣ୍ଠରେ ଡାକିଲା—"ବୋଉ, ବାପା ଫେରିଲେଣି ?" ଯୁବକଟିର କଣ୍ଠସ୍ୱର ସ୍ୱାଭାବିକ ନ ଥିଲା ବୋଧହୁଏ, କାରଣ ସାଧାରଣତଃ ଯୁବକଟି ଏପରି କଣ୍ଠରେ କେବେ କୌଣସି କଥାବାର୍ତ୍ତା କରେ ନାହିଁ । କାରଣ ଘର ଭିତରୁ ଯୁବକଟିର ବୋଉ "କାହିଁକି କ'ଣ ହେଲା ?" କହୁ କହୁ ବାହାରି ଆସିଲାବେଳେ ତାଙ୍କ ମୁହଁରେ ଉଦ୍‌ବେଗର ଚିହ୍ନ କେବଳ ଫୁଟି ଉଠି ନ ଥିଲା, କଣ୍ଠରେ କିଛି ଶଙ୍କା ମଧ୍ୟ ଥିଲା । ଯୁବକଟି ପୁଣି ଥରେ ପ୍ରଶ୍ନ କଲା—"ଫେରିନ ?" ଯୁବକଟିର ବୋଉ ପୁନରପି ଶଙ୍କିତ କଣ୍ଠରେ ପଚାରିଲେ—"କାହିଁକିରେ, କ'ଣ ହେଲା ?" ଯୁବକଟି କିଛି ସମୟ ତା' ବୋଉ ମୁହଁକୁ ଚାହିଁ ରହିଲା । ତା'ପରେ କ'ଣ ଭାବି ହଠାତ୍ "ନାହିଁ, କିଛି ନାହିଁ" କହୁ କହୁ ଦାଣ୍ଡକୁ ବାହାରି ଆସି ବାହାରେ ଅପେକ୍ଷମାଣ ତା' ସାଙ୍ଗ ସାଥିରେ ଗଳିର ଅନ୍ଧାର ଓ ଧୂଆଁ ଭିତରେ ଅଦୃଶ୍ୟ ହୋଇଗଲା । ଯୁବକଟିର ବୋଉ ମଧ୍ୟ ତା' ପଛେ ପଛେ ବାହାରକୁ ଆସିଲେ ନୀରବରେ ଏବଂ ଯୁବକ ଦୁଇ-ଜଣ ଅଦୃଶ୍ୟ ହୋଇ ଯାଉଥିବା ଦେଖି ଅଳ୍ପ ଉଚ୍ଚ ସ୍ୱରରେ ପଚାରିଲେ—"ଏଇ ଚନ୍ଦୁ, ତୁ କୁଆଡ଼େ ଯାଉଛୁ ? ଏଇ ?" ଦୁଇଥର ପଚାରିଲେ । କିନ୍ତୁ ଉତ୍ତର ପାଇଲେ ନାହିଁ । ଯୁବକ ଦୁଇଜଣ ବେଶ କିଛି ବାଟ ଆଗେଇ ଯାଇ ଅଦୃଶ୍ୟ ହୋଇଗଲେ ?

ଚନ୍ଦୁବୋଉ ସେଇଠାରେ ଠିଆ ହୋଇ ରହିଲେ । ତାଙ୍କର ଦୃଷ୍ଟି ଗଳି-ମୁଣ୍ଡ ପର୍ଯ୍ୟନ୍ତ ପ୍ରସାରିତ ଥିଲା । ଗଳିମୁଣ୍ଡରେ ପ୍ରକାଣ୍ଡ ପ୍ରାଚୀନ କୋଠା ପାଖରେ ବତି-ଖୁଣ୍ଟରେ ମିଞ୍ଜି ମିଞ୍ଜି ହୋଇ ଆଲୁଅ ଜଳୁଥାଏ । ପଲସ୍ତରା ଖସି ପଡ଼ିଥିବା କାନ୍ଥର

ନଙ୍ଗଳା ଆବୁଡ଼ା ଖାବୁଡ଼ା ଉପରେ ସେଇ ମଳୟ ଆଲୁଅ ପଡ଼ୁଥାଏ । ମଝିରେ ମଝିରେ ପବନ ବହିଲେ, ବଗିଚା ପାଖରେ ଥିବା ଗୋଟିଏ ଜାମୁ ସଜନା-ଗଛର ଶୀର୍ଣ୍ଣ ଶାଖା ପ୍ରଶାଖାଗୁଡ଼ିକ ଦୋହଲି ଯାଉଥାଏ, ଆଉ ତା'ର ପ୍ରତିଫଳନ ପଡ଼ୁଥାଏ କାନ୍ଥର ସେଇ ଆବୁଡ଼ା ଖାବୁଡ଼ା ଉପରେ ।

ଚନ୍ଦୁବୋଉ ଅନେକ ବେଳଯାଏଁ ଜଡ଼ବତ୍ ଠିଆ ହୋଇ ରହିବା ପରେ ହଠାତ୍ ଗୋଟିଏ କୁଲି କୁକୁର ଏତେ ଜୋର୍‌ରେ ଭୁକି ଉଠିଲା ଯେ, ସେ ଚମକି ପଡ଼ି ଗ୍ରତରେ ଲଣ୍ଠାଏ ଛେପ ପକେଇ ଘର ଭିତରକୁ ପାଦ ବଢ଼େଇଛନ୍ତି କି ନାହିଁ, ଗଳି ମୁଣ୍ଡରେ କେତେଜଣ କ'ଣ ସବୁ ବଡ଼ ପାଟିରେ କହି କହି ଆସୁଥିବାର ଦେଖି ପୁଣି ରହିଗଲେ ।

ସେମାନଙ୍କ କଥାବାର୍ତ୍ତା ଚନ୍ଦୁବୋଉଙ୍କୁ ସ୍ପଷ୍ଟ ଶୁଣାଗଲା ନାହିଁ । ମାତ୍ର 'ଚନ୍ଦ୍ରଧର ବୋଲି ଗୋଟିଏ ପିଲା, ଛୁରିଭୁଷି ଦେବା ବାଲା'—ଏହି କଥାଟି କାନରେ ପଡ଼ିଲା । ଦଳଟି ପାଖେଇ ଆସିବାରୁ ସେ ଅଳ୍ପ ଝୁଙ୍କି ପଡ଼ି ଗୁହାଁଳେ ! ଚନ୍ଦୁ-ବୋଉଙ୍କୁ ଦେଖି ସେମାନେ ମଧ୍ୟ ଅମଙ୍କ ଛିଡ଼ା ହୋଇ ପଡ଼ିଲେ । ଚନ୍ଦୁ ବୋଉ ସେମାନଙ୍କୁ ଚହ୍ନି ପାରି ଜଣଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ—'କ'ଣ ହୋଇଛି କିରେ କୁନା ?' ସେମାନେ ପରସ୍ପର ମୁହଁ ଗୁହାଁଚାହିଁ ହେଲେ । କୁନା ସହଜ କଣ୍ଠରେ କହିଲା—"କାହିଁ, କିଛି ନାହିଁତ ?" ଚନ୍ଦୁବୋଉ ବ୍ୟସ୍ତହୋଇ ପ୍ରଶ୍ନ କଲେ —"କ'ଣ ସବୁ କହୁଥିଲ ?" ଚନ୍ଦୁବୋଉଙ୍କ ପ୍ରଶ୍ନରେ ସେମାନେ ପୁଣି ନିଜ ଭିତରେ ମୁହଁ ଗୁହାଁଚାହିଁ ହେଲେ । ଶେଷରେ କୁନା କହିଲା—"ନାଇମ ମାଉସୀ, ଆଉ ସାଇରେ କ'ଣ ଗୋଟିଏ ଗଣ୍ଡଗୋଳ ହୋଇଥିଲା ସେ ସେଇକଥା ।" ଚନ୍ଦୁବୋଉ ଏଥର ବ୍ୟସ୍ତ କଣ୍ଠରେ ପ୍ରଶ୍ନକଲେ—"ଗଣ୍ଡଗୋଳ ହୋଇଥିଲା ? କେତେବେଳେ ? କେଉଁଥିପାଇଁ ? କିଏ କିଏ ଥିଲେ ?" କୁନା ଚନ୍ଦୁବୋଉଙ୍କ କଥା ଲକ୍ଷ୍ୟରକୁ ମଝିରେ ରୋକି ଦେଇ କହିଲା—"ଏଇମିତିକା, ଆଜିକାଲିତ ସବୁଠି ସେମିତି ଚାଲିଛି । ସେ କିଛିନାହିଁ ମାଉସୀ ।" କହୁ କହୁ ସେମାନେ ସମସ୍ତେ ଚାଲିଗଲେ । ନିଜ ନିଜ ଭିତରେ କ'ଣ ସବୁ ଫୁସୁରୁଫାସର ହେଲେ । ଚନ୍ଦୁବୋଉ ଅଗତ୍ୟା ଉଚ୍ଚ କଣ୍ଠରେ ପଚାରିଲେ—"ଆମ ଚୁଲିକୁ ଦେଖିଛ ?" କୁନା ଚାଲିପଡ଼ି କହିଲା—"ନାହିଁ ମାଉସୀ, କୋଉଠି ଖେଳୁଥିବ ବୋଧେ" କହି ସେମାନେ ଆଉ ଅପେକ୍ଷା କଲେ ନାହିଁ । ତରବର ହୋଇ ଆଗକୁ ମାଡ଼ିଗଲେ ।

କିଛି ସମୟ ପରେ ଚନ୍ଦୁବୋଉ ଘର ଭିତରକୁ ଚାଲିଗଲେ । ଦାଣ୍ଡଘର ଦେଇ ବାରଣ୍ଡା ପାରହୋଇ ଭିତରର ଗୋଟିଏ କଣଘର ସାମନାରେ ଠିଆହେଲେ,

ଝାଟିଢ଼ିରେ । ଘର ଭିତରେ ଗୋଟିଏ ଖଟ ଉପରେ କେହି ଜଣେ ଶୋଇଥାଏ । ଚନ୍ଦୁବୋଉଙ୍କ ଦୃଷ୍ଟି ପଡ଼ିଲା ସେଇ ଶାୟିତ ବ୍ୟକ୍ତିଟି ଉପରେ । ସେ କଡ଼ ଲେଉଟାଇଲା । ଚନ୍ଦୁ ବୋଉ ପଚାରିଲେ—"ଦୁଧ ପିଇବ ? ଗରମ କରି ଆଣିଛି ?"

ଲୋକଟି ଚନ୍ଦୁ ବୋଉଙ୍କ ଆଡ଼େ ମୁହଁ ବୁଲାଇ ଚାହିଁଲାରୁ ମୁହଁ ଉପରେ ଝର୍କା ବାଟେ କଞ୍ଚା ଜହ୍ନ ଆଲୁଅ ଠେଲିହୋଇ ଆସି ପଡ଼ିଲା—ଶୀର୍ଣ୍ଣ ମୁହଁ, ମାଢ ଗାଢ଼ୁଆ, କୋଟରଗତ ଆଖିତଳେ ଦୁଇଟି ହନୁ ହାଡ଼ ସ୍ପଷ୍ଟ । ତମ୍ବା ରଙ୍ଗର ମୁହଁ ।

ଚନ୍ଦୁବୋଉ ପୁଣିଥରେ ପଚାରିଲେ—"ଦୁଧ ପିଇବ ? ଗରମ କରି ଆଣିଛି ?"

ଲୋକଟିର ତମ୍ବାରଙ୍ଗର ମାଂସପେଶୀ କୁଞ୍ଚିତ ହୋଇଗଲା । ଗାଳଖିଆ ଖଇରା ଦାନ୍ତର ପନ୍ତ୍ରୀ ମେଲା ହୋଇଗଲା । ଲୋକଟିର ନାକରୁ କେତେଗୁଡ଼ିଏ ଶବ୍ଦ ହାବୁକା ମାରି ବାହାରି ଆସିଲା—"ହଃ, ଦୁଧ ପିଇଲେତ ଏଇନେ ମୋ ଗୋଡ ଭଲ ହୋଇଯିବ, ମୁଁ ନାଚିବି । ସ୍ୱାଃ ମାଇକିନିଆ ଜାତଟା....ଗୁଣବନ୍ତ ପୁଅ ତମର ସବୁ ଫେରିଲେଣି ? ଚନ୍ଦୁ ଇଣ୍ଟରଭିଉ କ'ଣ ହେଲା ? ବୁଲୁ କୁଆଡେ ଯାଇଛି ?"

ଚନ୍ଦୁବୋଉ ନୀରବରେ ଠିଆହୋଇ ରହିଲେ । କେବଳ ବୁଲୁ କଥାରେ ଦେହ ଯେପରି ଥରି ଉଠିଲେ ।

ଲୋକଟିର ମାଂସପେଶୀ ଗୁଡ଼ିକ ପୁଣିଥରେ କୁଞ୍ଚିତ ହୋଇଗଲା—"ସ୍ୱାଃ ଖୁଣ୍ଟ ଭଳି ଠିଆ ହୋଇଛ କାହିଁ ? କାନକୁ ଶୁଭୁନାହିଁ ?"

ଚନ୍ଦୁବୋଉ ଧୀର କଣ୍ଠରେ "ନାହିଁ, କେହି ଫେରି ନାହାନ୍ତି" କହି ସେଠୁ ଘୁଞ୍ଚି ଆସିଲେ । ହାଣ୍ଡିଶାଳରେ କ'ଣ ଗୋଟାଏ ଝନ୍‌କିନି ପଡ଼ିବାର ଶବ୍ଦ ହେଲା । "ହେଇ ଖାଇପେଇଗଲା" କହୁ କହୁ ଚନ୍ଦୁବୋଉ ଦଉଡ଼ିଯାଇ ଗୋଟିଏ ବିଲେଇକୁ ତଡ଼ିଲେ । ତଡ଼ି ତଡ଼ି ବାହାରକୁ ଆଣିଲାବେଳେ ଦାଣ୍ଡଘରେ କାହାର ପାଦଶବ୍ଦରେ ଉଚକିତ ହୋଇ ଘୁଞ୍ଚିଲେ । ଝିଅଟିଏ ଧଇଁସଇଁ ହୋଇ ପଞ୍ଚୁ ପଞ୍ଚୁ ପଚାରିଲା—"ବୋଉ ବୋଉ, ବୁଲୁଭାଇ ଫେରି ନାହାନ୍ତି ?"

ଚନ୍ଦୁବୋଉଙ୍କ ଶଙ୍କିତ ଆଖି ଝିଅଟି ଉପରେ ଅବସ୍ଥାପିତ ହେଲା । ଝିଅଟି ବା' ଚକିତେ ଯେପରି କ'ଣ ବୁଝିଗଲା, ତା ଆଖିରେ ମଧ୍ୟ ଅନୁରୂପ ଭାବ ସୃଷ୍ଟି ହେଲା ।

ଶେଷରେ ଚନ୍ଦ୍ରବୋଉଙ୍କ ଅଗତ୍ୟା ସ୍ୱର ପ୍ରକାଶ ପାଇଲା ତାଙ୍କ କଣ୍ଠରେ—
"କାହିଁକି କିଲେ ?"

ଝିଅଟି ଝଟକି କିନ୍ତୁ ସ୍ଥିର କର ନ ପାରି ଦ୍ୱିଧାଗ୍ରସ୍ତ ହେଲା । ଅବଶେଷରେ କହିଲା—"କୁନାଭାଇ କହୁଥିଲେ···" କହି ଅଟକିଗଲା, ଚନ୍ଦ୍ରବୋଉଙ୍କ ମୁହଁର ଭାବାନ୍ତର ଲକ୍ଷ୍ୟ କଲା ।

ଚନ୍ଦ୍ରବୋଉଙ୍କ ଉଦ୍‌ବେଗ ବଢ଼ିଗଲା—"କ'ଣ କହୁଥିଲା ?"

—"କହୁଥିଲେ···କୁଲାଙ୍ଗାର କୁଆଡ଼େ ଆଉ ଗାଁରେ ମୁହଁ ଦେଖାଇବାକୁ ମାଣଛନ୍ତି....
ଆଉ ସେଇଥିପାଇଁ ଚନ୍ଦଧର ନୁହଁ ?" ଝିଅଟି ଅଟକିଗଲା, ଶେଷରେ ଏକା ନିଃଶ୍ୱାସରେ କହିଗଲା—"ଚନ୍ଦଧର ସେଥିପାଇଁ କୁଲାଙ୍ଗାରଙ୍କୁ ଘର ଭୁଷିଦେବ ବୋଲି ଖୋଜି ବୁଲୁଛୁ ।"

ଝିଅଟି ରୁଦ୍ଧଶ୍ୱାସରେ ଗ୍ରହିତହେଲା ବୋଉ ମୁହଁକୁ । ଚନ୍ଦ୍ରବୋଉ ନିର୍ବାକ ।

ଘରକଣରୁ ଶାସ୍ତି ତ ଲୋକଟିର ଅନୁନାସିକ ଚିତ୍କାର ଶୁଣାଗଲା—"ମରୁ ମରୁ, ହାରାମଜାଦା—ପାଠ ନାହିଁ ଶାଠ ନାହିଁ—ଯାଉ ଶଳା, ମରୁ, ଉଚ୍ଛନ୍ନ ଯାଉ ଗିହାଳପୁଅ ।"

ଏହାପରେ ଘରଟିରେ ନୈଶବ୍ଦ ବିରାଜମାନ କଲା ।

ସନ୍ଧ୍ୟା ଗଡ଼ିଗଲା ।

ଅନ୍ଧାର ବହଳ ହେବାକୁ ଲାଗିଲା ।

ଦାଣ୍ଡଘର କବାଟରେ କରାଘାତ ଶୁଭିଲା । ଚନ୍ଦ୍ର ବୋଉ କ୍ଷିପ୍ର ପାଦରେ ଯାଇ କବାଟ ଖୋଲିଲେ । ଚନ୍ଦ୍ର !

—"ଦେଖିଲୁ କୋଉଠି ?"

—"ଉହୁଁ, ପାଇଲିନି କୁଆଡ଼େ ।"

ପୁନରାୟ ନୈଶବ୍ଦ ଘେରିଗଲା ଘରଟିରେ । ମଝିରେ ଯାହା ବାସନ ମାଜିବା ଧୋଇବା ଶବ୍ଦ ହେଲା । କବାଟରେ ଶିକୁଳି ପଡ଼ିଲାବେଳେ ବିକୃତ ଆବାଜ ହେଲା ଗୋଟିଏ ।

ରାତି ଗଭୀର ହେଲା ।

ଆଖି ପତା ଶୀନ୍ଶାନ ହୋଇ ପଡ଼ିଲା ।

କିଛି ସମୟ ପରେ ଗୋଟିଏ ରିକ୍ସା ଘଣ୍ଟି ଶୁଭିଲା । ଚନ୍ଦୁ ବୋଉ ଉତ୍କର୍ଣ୍ଣା ହେଲେ । ରିକ୍ସା ଶବ୍ଦ ନିକଟେଇ ଆସିଲା । ଚନ୍ଦୁବୋଉ ଉଠି ବସିଲେ । ଶବ୍ଦଟି ଦୂରେଇ ଗଲା ।

ପୁଣି ନୈଃଶବ୍ଦ ।

ହଠାତ୍ ଦାଣ୍ଡଦୁଆରେ ଗୁଡ଼ାଏ ପାଦଶବ୍ଦ ସହ କବାଟ ଧଡ଼ ଧଡ଼ ହେଲା ।

ସ୍ୱପ୍ନ ଭଙ୍ଗ ହେଲାପରି ଚନ୍ଦୁବୋଉ ଝଟକା ଉଠିବସିଲେ । ପାଦଶବ୍ଦର କୋଳାହଳ ସ୍ପଷ୍ଟ ଶୁଣାଗଲା । ଚନ୍ଦୁବୋଉ ଲାଇଟ୍ ଜାଳିଲେ । ତା'ପରେ ବହୁତ କଷ୍ଟରେ ତାଙ୍କ କଣ୍ଠରୁ ସ୍ୱର ବାହାରିଲା—"ଏଇ ଶୁଣୁଛ ? ଏଇ ?"

ଖଟ ଉପରେ ଶାୟିତ ଲୋକଟିର ଅନୁନାସିକ କଣ୍ଠ ଶୁଣାଗଲା—"ହଁ, ଯାଅ, ଯାଅ, ଦେଖ ଦେଖ ତମ ଗୁଣବନ୍ତ ପୁଅଙ୍କ ଆଗମନ ହେଲା ବୋଧେ ।"

ଚନ୍ଦୁବୋଉ କବାଟ ଆଡ଼କୁ ଅଗ୍ରସର ହେଲେ ।

ପୁଣି ଲୋକଟିର ଆନୁନାସିକ କଣ୍ଠ ଶୁଣାଗଲା—"ଦେଖ, ତମ ଗୁଣବନ୍ତ ପୁଅ ଆସିଲେ ନା ତାଙ୍କ ଲାଶ୍ ଆସିଲା ।"

ଚନ୍ଦୁବୋଉ ଚମକି ଛିଡ଼ା ହୋଇ ପଡ଼ିଲେ ।

ଦାଣ୍ଡ ଦୁଆରେ ପାଦଶବ୍ଦର କୋଳାହଳ ସ୍ପଷ୍ଟତର ହେଲା ଓ କବାଟରେ କ୍ରମାଗତ କରାଘାତ ହେବାକୁ ଲାଗିଲା ।

( ୧୯୭୫ )

# ଦିନେ ଏହିପରି ହେଲା

ଦିନେ ଏହିପରି ହେଲା ।...

ବିଦ୍ୟାଳୟର ବାର୍ଷିକ ଉତ୍ସବ ଚାଲିଥାଏ । ଚନ୍ଦ୍ରଧର ମାଷ୍ଟ୍ରେ ତିନୋଟି ଧାଡ଼ି ପଛରେ ଚତୁର୍ଥ ଧାଡ଼ିରେ ଗୋଟିଏ ଚେୟାରରେ ବସି ମନ୍ତ୍ରୀଙ୍କ ଭାଷଣ ଶୁଣୁଥିଲେ । ଚନ୍ଦ୍ରଧର ମାଷ୍ଟ୍ରଙ୍କ ଧମନୀରେ ଯେଉଁ ରକ୍ତ ବୁଲେ ତା'ର ରଙ୍ଗ ନିଷ୍ଠାପର । ଜନ୍ମରୁ ହିଁ ସେ ଏହିପରି । ବର୍ତ୍ତମାନ ତା'ର ଆଉ ପରିବର୍ତ୍ତନ ସମ୍ଭବ ନୁହେଁ । ତେଣୁ ସେ ନିଷ୍ଠାପର ଭାବେ ବସି ମନ୍ତ୍ରୀଙ୍କ ଭାଷଣ ଶୁଣୁଥାନ୍ତି । ପରିବହନ ମନ୍ତ୍ରୀଙ୍କ ଭାଷଣ । ବିଦ୍ୟାଳୟର ବାର୍ଷିକ ଉତ୍ସବରେ ପରିବହନ ମନ୍ତ୍ରୀ କାହିଁକି ଉଦ୍‌ବୋଧନ ଦେବେ ସେ ବିଷୟରେ ଚନ୍ଦ୍ରଧର ମାଷ୍ଟ୍ରେ ପ୍ରଥମେ ପ୍ରଧାନ ଶିକ୍ଷକ ତଥା ମ୍ୟାନେଜିଂ କମିଟିର ସମ୍ପାଦକଙ୍କ ସହିତ ଯୁକ୍ତି କରିଥିଲେ । ମାତ୍ର ଚନ୍ଦ୍ରଧର ମାଷ୍ଟ୍ରଙ୍କ ରକ୍ତର ରଙ୍ଗ ସମ୍ପର୍କରେ ଅଳ୍ପ ବହୁତ ସମସ୍ତେ ଅବଗତ ଥିବାରୁ ତାଙ୍କ ପ୍ରତିବାଦକୁ କେହି କର୍ଣ୍ଣପାତ କରି ନ ଥିଲେ । ଏବଂ ଚନ୍ଦ୍ରଧର ମାଷ୍ଟ୍ରେ ନିଜେ ମଧ୍ୟ ଏ ସମ୍ପର୍କରେ ସଚେତନ ଓ ତେଣୁ ତାଙ୍କର ନିଷ୍ଫଳ ଏକକ ପ୍ରତିବାଦ ଯେ ନିରୋଳା ଅରଣ୍ୟ-ରୋଦନ, ତାହା ସେ ପୂର୍ବରୁ ଇ ଜାଣିଥିଲେ ଏବଂ ସେଥିପାଇଁ ସେ ବିଚଳିତ ହେଲେ ନାହିଁ । ବରଂ ତାଙ୍କ ରକ୍ତର ରଙ୍ଗ ଯେ ଆଦୌ ବଦଳୁ ନାହିଁ, ତାହା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ସେ ଉତ୍ସବରେ ଯୋଗ ଦେବେ ନାହିଁ, ବା ମନ୍ତ୍ରୀଙ୍କ ଭାଷଣ ଶୁଣିବେ ନାହିଁ—ସେପରି ଆଚରଣ ମଧ୍ୟ ତାଙ୍କ ରକ୍ତର ବିରୋଧୀ । ସୁତରାଂ, ସେ ଚତୁର୍ଥ ଧାଡ଼ିରେ ବସି ମନ୍ତ୍ରୀଙ୍କ ଭାଷଣ ଶୁଣୁଥିଲେ । ମନ୍ତ୍ରୀ ମହୋଦୟ ତାଙ୍କର ସାରଗର୍ଭକ ଭାଷଣରେ ଦେଶର ସାଂପ୍ରତିକ ପରିସ୍ଥିତି ସକାଶେ ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ । ବିଶେଷତଃ, ଏହି କୋମଳ କିଶୋରଙ୍କର ଆଗାମୀ ଭବିଷ୍ୟତ ଯେ ଗଭୀର ଅନ୍ଧକାରରେ ପରିପୂର୍ଣ୍ଣ, ତାହା ଚିନ୍ତା କରି ଓ ସେହି ଚିନ୍ତାକୁ ସର୍ବସମକ୍ଷରେ ବ୍ୟକ୍ତ କରି ସେ ଥରେ ଦୁଇ ଥର ଶିହରିତ ହୋଇ ଯାଉଥିଲେ ମଧ୍ୟ । ଏମାନଙ୍କ ଆଗରେ ଆଜି ଆଉ କୌଣସି ଆଦର୍ଶ ନାହିଁ—ଏହା ମନ୍ତ୍ରୀ ମହୋଦୟଙ୍କ ଅନ୍ତରରେ ଗଭୀର ବେଦନା ଜାତ କରାଉଥିଲା । କିନ୍ତୁ ଏଥିପାଇଁ ଦାୟୀ କିଏ ? ଦାୟୀ ଏଇ ଶିକ୍ଷା, ବର୍ତ୍ତମାନର ଏଇ ଶିକ୍ଷା ପଦ୍ଧତି । ଦାୟୀ ଆପଣମାନେ, ମନ୍ତ୍ରୀ ମହୋଦୟ ଉଚ୍ଚ କଣ୍ଠରେ ଘୋଷଣା କଲେ, ମୁଁ କହିବି ଏଥିପାଇଁ ଦାୟୀ ଆପଣମାନେ, ଯେଉଁମାନେ ଶ୍ରମ-ବିମୁଖ, ଦାସ-ମନୋଭାବ ସମ୍ପନ୍ନ....ହଠାତ୍ ଏହିଠାରେ ଚନ୍ଦ୍ରଧର ମାଷ୍ଟ୍ରେ ସଭା ମଧ୍ୟରେ ଠିଆ ହୋଇ ପଡ଼ିଲେ ଓ ତତ୍‌କ୍ଷଣାତ୍ ଚଟିରେ ଫଟ୍ ଫଟ୍ ଶବ୍ଦ

କରି ସଭା କକ୍ଷରୁ ବାହାରି ଆସିଲେ । ଚନ୍ଦ୍ରଧର ମାଷ୍ଟ୍ରଙ୍କ ରକ୍ତର ରଙ୍ଗ ସନ୍ଦର୍ଭ ପରିଚିତ କେତେଜଣ ତାଙ୍କୁ କଣେଇ କଣେଇ ଚାହିଁଲେ ମାତ୍ର ସଭା ମଧ୍ୟରେ ଅନ୍ୟ କୌଣସି ପ୍ରତିକ୍ରିୟାର ଲକ୍ଷଣ ଦେଖାଗଲା ନାହିଁ । ଯେ ଯାହାହେଉ, ଚନ୍ଦ୍ରଧର ମାଷ୍ଟ୍ରେ ସଭା କକ୍ଷରୁ ସିଧା ରାସ୍ତା ଉପରକୁ ଚାଲି ଆସିଲେ । ରାସ୍ତା ଉପରେ ଲୋକବାକ ଯା'ଆସ କରୁଥିଲେ । ଗାଡ଼ି ମଟର ଚଳ'ଚଳ କରୁଥିଲା । ରାସ୍ତା ଦୁଇ କରେ ଲମ୍ବା ଲମ୍ବା ଗଛଗୁଡ଼ିକୁ ଗୋଟିକ ପରେ ଗୋଟିଏ ପଛରେ ରଖି ଚନ୍ଦ୍ରଧର ମାଷ୍ଟ୍ରେ ଆଗେଇ ଯାଉଥିଲେ । କିଛି ଚିନ୍ତା କରୁ ନଥିଲେ । ମୁଣ୍ଡଟିକୁ ସଳଖ ରଖିଲେ ଆଖି ଯେତେଦୂର ପ୍ରସରି ପାରେ, ଚନ୍ଦ୍ରଧର ମାଷ୍ଟ୍ରେ ଆଖିରେ ଦୃଷ୍ଟି ସେଇ ଦୂର ପର୍ଯ୍ୟନ୍ତ ରଖି ଧୀରେ ଧୀରେ ଆଗେଇ ଯାଉଥିଲେ । ଚଲା ବାଟୋଇଙ୍କୁ ଆଡ଼େଇ ଆଡ଼େଇ ସେ ଚାଲିଥିଲେ । ଗାଡ଼ି ମଟରକୁ ବାଟ ଛାଡ଼ିଦେଇ ରାସ୍ତା କରେ କରେ ସେ ସିଧା ଚାଲିଥିଲେ । କାହାରି ଉପରେ ତାଙ୍କର ନଜର ନ ଥାଏ । କାହାକୁ ସେ ଚାହୁଁ ନ ଥିଲେ । କିଏ ଯାଉଛି ବା କିଏ ଆସୁଚି ସେ ଦେଖୁ ନଥିଲେ । ଯେମିତି ସଚେତ ସେ ଘରଦ୍ୱାର ପଛରେ ଛାଡ଼ି ଦେଇ ସନ୍ନ୍ୟାସୀ ହୋଇ ଚାଲି ଯାଉଛନ୍ତି । ବୈରାଗ୍ୟରେ । ନୀରବ ଅଭିମାନରେ । କେଉଁଠାକୁ ଯାଉଛନ୍ତି ସେ ନିଜେ ବୁଝି ପାରୁ ନାହାନ୍ତି । କିନ୍ତୁ ଚାଲି ଯାଉଛନ୍ତି । ସବୁ ତେଜି ସେ ଚାଲି ଯାଉଛନ୍ତି । ଛାଡ଼ି ଯିବା ପାଇଁ ତାଙ୍କୁ କଷ୍ଟ ହେଉଚି । ଛାତି ଭିତରେ ଭାରି କଷ୍ଟ ବୋଧ ହେଉଛି । କିନ୍ତୁ ତଥାପି କେଜାଣି କାହିଁକି ସେ ଚାଲିଛନ୍ତି । ରାସ୍ତା ଆଗକୁ ଆଗକୁ ଲମ୍ବି ଯାଇଛି । ସେଇ ରାସ୍ତାରେ ସେ ଆଗେଇ ଯିବେ । ଆଉ ପଛକୁ ଚାହିଁବେନି । ଚକ୍ଷୁ-ଜଣା ଡକରାରେ ବି ସେ ପଛକୁ ବୁଲିପଡ଼ି ରୋକି ଯିବେନି । କାହିଁକି ଆଉ ମୁହଁ ଫେରାଇ ଚାହିଁବେ ସେ ? କିଏ ତାଙ୍କୁ ପଚାରିଲା ଆଜିଯାଏ ? କିଏ ତାଙ୍କୁ ଲୋଡ଼ୁଚି ଏଇ ପଛରେ ଛାଡ଼ି ଆସିଥିବା ହାଉଯାଉ ଭିତରେ ? ଆଦୌ ଆଉ ସେ ବେକ ବୁଲାଇ ଚାହିଁବେନି ପଛକୁ । ସେ ଚାଲି ଯାଉଛନ୍ତି....ସବୁ କିଛି ଛାଡ଼ି ଚାଲି ଯାଉଛନ୍ତି···

( ୨ )

ମୋର ପ୍ରିୟ ପାଠକ ପାଠିକାମାନେ, ମତେ କ୍ଷମା କରିବେ । ସାଂପ୍ରତିକ ସମାଜକୁ ନେଇ ମୁଁ ଯେଉଁ ଗଳ୍ପଟି ଲେଖିବାକୁ ଯାଉଥିଲି ହଠାତ୍ ସେ ଗଳ୍ପଟି ଯେ ଏପରି ଏକ ମୋଡ଼ ନେବ ମୁଁ ଭାବି ପାରୁ ନଥିଲି । ବସ୍ତୁତଃ, ସାଂପ୍ରତିକ ସମାଜର ଛଳନା, ପ୍ରବଞ୍ଚନା, ଓ ଏକ ବ୍ୟାପକ ନୈତିକ ଅଧଃପତନ ସବୁକୁ ଆଖି ଆଗରେ ରଖି ମୁଁ ଏହି ଗଳ୍ପର ଏକ ବିଦ୍ରୋହୀ ଚରିତ୍ର ସୃଷ୍ଟି କରିବାକୁ ଚାହୁଁଥିଲି । ଏବଂ ସେହି ଅନୁଯାୟୀ ଚନ୍ଦ୍ରଧର ମାଷ୍ଟ୍ରଙ୍କୁ ଏକ ନୈଷ୍ଠିକ ବିଦ୍ରୋହୀ ରୂପେ ଉପସ୍ଥାପିତ କରି ଆସୁଥିଲି, ଏହା ଏହି ଗଳ୍ପର ପ୍ରଥମାଂଶରେ ଆପଣମାନେ

ନିଶ୍ଚୟ ଲକ୍ଷ୍ୟ କରିଥିବେ । କିନ୍ତୁ ବିଦ୍ରୋହ-ପ୍ରକାଶର ଠିକ୍ ଗୁରୁତ୍ୱପୂର୍ଣ୍ଣ ମୂହୂର୍ତ୍ତରେ ହଠାତ୍ ମୋ ଗଳ୍ପର ଚରିତ୍ର ମୋ', କଲମ ମୁନରୁ ଫସି ଯାଇ ବୈଷ୍ଣବଙ୍କ ପରି ଏମିତି ଅଭିମାନରେ ରାସ୍ତାରେ ଚାଲିବାକୁ ଆରମ୍ଭ କଲେ କାହିଁକି, ମୁଁ ନିଜେ ବି ବୁଝି ପାରୁନାହିଁ । ମୋ' ଜୀବନରେ ବିଦ୍ରୋହ ପରିବର୍ତ୍ତେ ଏପରି ବୈଷ୍ଣବୀୟ ବୈରାଗ୍ୟ ଆଦୌ ଆରୋପ କରିବାକୁ ଚାହୁଁ ନଥିଲି ମୁଁ । ବର୍ତ୍ତମାନ ମୁଁ ଭାବୁଛି ବୋଧହୁଏ ମୋର ଅତି ପରିଚିତ, ମତେ ଅତ୍ୟନ୍ତ ସ୍ନେହ କରୁଥିବା ଓ ଯାହାଙ୍କୁ ମୁଁ ପ୍ରାତଃସ୍ମରଣୀୟ, ଚିର-ନମସ୍ୟ ବୋଲି ମନେ କରେ, ମୋ'ର ସେହି ପିଲାଦିନର ଜଣେ ଶିକ୍ଷକ ବୋଧହୁଏ ବାସ୍ତବ ଜଗତରୁ ଉଠି ଆସି ହଠାତ୍ ମୋ' ଅଲକ୍ଷ୍ୟରେ ମୋ' ଗଳ୍ପର ସେହି ବିଦ୍ରୋହୀ ଚରିତ୍ରଟି ମଧ୍ୟକୁ ମିଶିଗଲେ । ଏବଂ ଫଳରେ ଗଳ୍ପର ମୋଡ଼ଟି ହଠାତ୍ ଏହିପରି ଅଭାବିତ ଭାବେ ବୁଲିଗଲା । କାରଣ ବାସ୍ତବ ଜଗତରେ ଥରେ ସେ ଏହିପରି ଘରଦ୍ୱାର ସ୍ତ୍ରୀ ହିତ୍‌ଭାନ୍ତଙ୍କ ପରି ହଠାତ୍ ଦିନେ ଅନ୍ତର୍ଦ୍ଧାନ ହୋଇଗଲେ । ଏବଂ ମୋର ସ୍ପଷ୍ଟ ମନେ ଅଛି ଆମେ, ତାଙ୍କର ପ୍ରିୟ ଛାତ୍ର ଓ କେତେଜଣ ଶିକ୍ଷକ ମିଳି ପରଦିନ ସନ୍ଧ୍ୟାବେଳେ ପାଖ ଗାଁରେ ଥିବା ଗୋଟିଏ ଛୋଟ ମଠରୁ ତାଙ୍କୁ ବୁଝାଇ ସୁଝାଇ ଘରକୁ ଫେରାଇ ଆଣିଥିଲୁ । ପରେ ଆମେ ଶୁଣିବାକୁ ପାଇଥିଲୁ ଯେ ତା' ପୂର୍ବଦିନ ଗୋଟିଏ ଅତି ତୁଚ୍ଛ ଘଟଣା ଘଟି ଯାଇଥିଲା । ଅତି ନଗଣ୍ୟ, ସାଧାରଣ ଘଟଣା । ସେତେବେଳେ ଆମ ବିଦ୍ୟାଳୟରେ ବାର୍ଷିକ ପରୀକ୍ଷା ଚାଲିଥାଏ, ଅନ୍ୟମାନଙ୍କ ପରି ମୋ'ର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ମଧ୍ୟ ପରୀକ୍ଷା ହଲ୍‌ରେ ଗାର୍ଡ ପଡ଼ିଥାନ୍ତି । ହଲ୍ ଭିତରେ ବୁଲି ବୁଲି ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ହଠାତ୍ ଗୋଟିଏ ପିଲାର ଚୁଟି ମୁଠେଇ ଧରି କହିଲେ, ହଇରେ ବାଜିଙ୍ଗା, କୁଳାଙ୍ଗାର ପାଠ ପଢ଼ୁଛୁ ନା ପାଠ ପଢ଼ୁଛୁ ? ଖାତା ଯାକ ଲେଖିଛୁ ନଦୀ ନଦୀ ନଦୀ, ଆଁ ? ଜାତ୍ ତାଳ । ସାର୍ ଯି କରେ— । ଏହି କଥାକୁ ଅନ୍ୟ ଜଣେ ସାର୍ ହେଡମାଷ୍ଟରଙ୍କ କାନରେ ପୋଡ଼ି ଦେଲେ ଯେ ଜଣେକ ଶିକ୍ଷକ ପିଲାଙ୍କୁ ପରୀକ୍ଷା ହଲରେ ବନାନ କହି ଦେଉଛନ୍ତି । ଅନ୍ୟ କେତେଜଣ ପିଲା ମଧ୍ୟ ସାକ୍ଷ୍ୟ ଦେଲେ — ହଁ ସାର୍ ବନାନ ଦଶେଇ ଦେଉଛନ୍ତି । ତହୁଁ ହେଡ଼ମାଷ୍ଟ୍ରେ ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟଙ୍କୁ ଡାକି କହିଲେ—ଅଜ୍ଞା ଆପଣ ଏମିତି ଅଜ୍ଞ ଶସ୍ତା ବାହାଦୁରୀ ନେଲେ କ'ଣ ପିଲାଙ୍କ ସମ୍ଭାଳି ହେବ ? ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ଚମକି ପଡ଼ି କହିଲେ—ଶସ୍ତା ବାହାଦୁରୀ ! କିଏ ନେଲା ? ହେଡ଼ମାଷ୍ଟ୍ରେ କହିଲେ – ଅନେକେ ଆସି ମୋ' ପାଖରେ ଅଭିଯୋଗ କରୁଛନ୍ତି ଯେ ଆପଣ ପରୀକ୍ଷା ହଲ୍‌ରେ କେତେକ ନିର୍ଦ୍ଦିଷ୍ଟ ପିଲାଙ୍କୁ ସାହାଯ୍ୟ କରୁଛନ୍ତି । ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ତହୁଁ ପାଟିଟାକୁ ମେଲା କରି କହିଲେ—ଆଁ ? ବାପୁ, ଦେଢକ, ତାଙ୍କ ପାଟିରୁ ଆଉ କିଛି ସ୍ଫୁରିଲା ନାହିଁ । ସେ

ତାପରେ ଆଉ ହେଡ଼ମାଷ୍ଟ୍ରଙ୍କ ମୁହଁକୁ ଚାହିଁଲେ ନାହିଁ, ତଳକୁ ମୁହଁ ପୋତି କରି ସମସ୍ତ ଛୁଟା ହେଲେ । କଥାଭାଷା କଲେ ନାହିଁ । ଦୁଇଦିନ ସିଧା ଘରକୁ ଫେରି ଆସିଲେ । ଗୋଡ଼ ହାତ ଧୋଇ ଜଳଖିଆ ଖାଇ ବସିଲେ । ତା' ପରେ କ'ଣ ହେଲା କେଜାଣି ହଠାତ୍ ଉଠିପଡ଼ି ସିଧା ବାଣ୍ଡ ଘରକୁ ଚାଲି ଆସିଲେ, ସେଠୁ ବାରଣ୍ଡା, ବାରଣ୍ଡାରୁ ରାସ୍ତା, ରାସ୍ତାରୁ କୁଆଡ଼େ କୁଆଡ଼େ ଗଲେ କିଏ ଜାଣେ, କୁଆଡ଼େ କୁଆଡ଼େ ବୁଲିଲେ, ପାଗଳଙ୍କ ପରି, ଉଦ୍‌ଭ୍ରାନ୍ତ ଭାବେ, ତା'ପରେ ତାଙ୍କ ପତ୍ନୀ ମିଳିଲା ଯାଇ ସେଇ ମଠରେ ! ଅବଶ୍ୟ ତାଙ୍କ ଜୀବନରେ ଏଥିପୂର୍ବରୁ ଏହିପରି ଆଉ ଗୋଟିଏ ଘଟଣା ଘଟିଥିଲା । ସେଇ ବିଦ୍ୟାଳୟରେ, ସେଇ ହେଡ଼ମାଷ୍ଟ୍ରଙ୍କ ସହିତ, ସେଇ ପରୀକ୍ଷାକୁ କେନ୍ଦ୍ର କରି । ତାଙ୍କର ବଡ଼ପୁଅ ମାଟ୍ରିକ୍ ପରୀକ୍ଷା ଦେଉଥାଏ । ସେଇ ବିଦ୍ୟାଳୟରେ । ତାଙ୍କର ଗାର୍ଡ ପଡ଼ିବା କଥା ନୁହେଁ । କିନ୍ତୁ ସେ ହେଡ଼ମାଷ୍ଟ୍ରଙ୍କୁ ପ୍ରଶ୍ନକଲେ—କାହିଁକି ମୋ ପ୍ରତି ଏତେ ସନ୍ଦେହ ? ବିଦ୍ୟାଳୟରେ ମୁଁ ପ୍ରଥମତଃ ଜଣେ ଶିକ୍ଷକ, ପିତା ନୁହେଁ (କହିବା ବାହୁଲ୍ୟ ଯେ ସେ ଏହିପରି ସାଧୁ ଭାଷାରେ ହିଁ କଥାବାର୍ତ୍ତା କରନ୍ତି । ) ସୁତରାଂ ତାଙ୍କୁ ଗାର୍ଡ ହେବାକୁ ହେଡ଼ମାଷ୍ଟ୍ରେ ଅନୁମତି ଦେଲେ । ହାୟ ! ଦେଖ ବିଧାତାର କି ପରିହାସ ! ପରୀକ୍ଷା ହଲରେ ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ଦେଖିଲେ ଯେ ତାଙ୍କର ଗୁଣମଣି ପୁତ୍ର ଅସାଧୁ ଉପାୟ ଅବଲମ୍ବନରେ ବ୍ୟସ୍ତ । ଆଶ୍ଚର୍ଯ୍ୟ ! କାଗଜ ଖଣ୍ଡିକ ପୁତ୍ର ନିକଟରୁ ଛଡ଼ାଇ ନେଇ (କୋର କରି) ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ସିଧା ହେଡ଼ମାଷ୍ଟ୍ରଙ୍କ ଟେବୁଲ ଉପରେ ରଖି କହିଲେ —କିଅନ୍ତୁ । ତାକୁ ଏଇ ମୁହୂର୍ତ୍ତରେ expel କରାଯାଉ । ହେଡ଼ମାଷ୍ଟ୍ରେ ଥାଥାମାମା ଆଖିରେ ତାଙ୍କ ମୁହଁକୁ ଚାହିଁ କହିଲେ—କିନ୍ତୁ···କିନ୍ତୁ ସେତେବେଳକୁ ମୋର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ସେଠାରୁ ବାହାରି ଚାଲି ଆସି ଥିଲେ । ଏ ଗଳ୍ପ ଘଟଣାର ଉପକ୍ରମଣିକା । ଅସଲ ଘଟଣା ଘଟିଲା ତା' ପରଦିନ—

ତା' ପରଦିନ ହେଡ଼୍‌ମାଷ୍ଟ୍ରେ ବିଦ୍ୟାଳୟରେ ଗୋଟିଏ ସଭା ଡକାଇଲେ । ସମସ୍ତ ପରୀକ୍ଷାର୍ଥୀ,ବିଦ୍ୟାଳୟର ସମସ୍ତ ଶିକ୍ଷକ, ତଥା କେତେଜଣ ବିଶିଷ୍ଟ ଗାର୍ଡିଆନଙ୍କ ଗହଣରେ ହେଡ଼ମାଷ୍ଟ୍ରେ ଘୋଷଣା କଲେ ତାଙ୍କ ବିଦ୍ୟାଳୟ ଏ ଅଞ୍ଚଳରେ ଏକ ଅତି ପୁରାତନ ଅନୁଷ୍ଠାନ । ଏହାର ଏକ ନୈତିକ ପରମ୍ପରା ରହିଛି ଏବଂ ଏହି ଅନୁଷ୍ଠାନଟି ଉପରେ ଗ୍ରାମୀୟ ଅଧିବାସୀମାନଙ୍କର ଏକ ଗଭୀର ଆସ୍ଥା ରହିଛି । ଯେ ପ୍ରଧାନ ଶିକ୍ଷକ ପଦରେ ଥିବା ଯାଏଁ ଏହି ପରମ୍ପରା ଓ ଏହି ଆସ୍ଥା ଅତୁଟ ଓ ଅକ୍ଷୟ ରଖିବା ପାଇଁ ଚେଷ୍ଟା କରିଯିବେ । ବସ୍ତୁତଃ (ତା'ପରେ ହେଡ଼ମାଷ୍ଟ୍ରଙ୍କ

ନିଜ ଭାଷାରେ ଶୁଣନ୍ତୁ)—ଏହି ପରମ୍ପରା ଓ ଆପଣମାନଙ୍କ ଗଭୀର ଆସ୍ଥା କଥା ସ୍ମରଣରେ ରଖି ଗତକାଲି ମୁଁ ଜନୈକ ଛାତ୍ରଙ୍କ ପ୍ରତି ଅତି କଠୋର ମନୋଭାବ ଗ୍ରହଣ କରିବାକୁ ବାଧ୍ୟ ହୋଇଛି । ପ୍ରକୃତପକ୍ଷେ କହିବାକୁ ଗଲେ ଏହିପରି ଏକ ଚରମ ଶାସ୍ତି ଦେବା ବେଳେ ମୋ'ର ପିତୃ ହୃଦୟ ଗଭୀର ଭାବେ ଆନ୍ଦୋଳିତ ହୋଇ ଉଠୁଥିଲା । ମୋ'ର ପିତୃ ହୃଦୟ ପଦେ ପଦେ ମତେ ବାଧା ଦେଉଥିଲା । ମାତ୍ର ମୁଁ ମନେ କଲି ଯେ ପ୍ରଧାନଶିକ୍ଷକ ହିସାବରେ ମୋ'ର ଦାୟିତ୍ୱହିଁ ଏଠାରେ ବଡ଼ କଥା, ପିତୃତ୍ୱ ନୁହେଁ, ଶିକ୍ଷକତ୍ୱ....ଇତ୍ୟାଦି....

ମାତ୍ର ଘଟଣାଟି ସେଇଠାରେ ହିଁ ସରି ନଥିଲା । ଏହାର ଠିକ୍ ତିନି ଚାରିମାସ ପରେ, ସ୍ୱାଧୀନତା ଦିବସ ଦିନ ଆମେ ରେଡ଼ିଓରେ ସମ୍ବାଦ ଶୁଣିଲୁ ଏବଂ ଖବର କାଗଜରେ ମଧ୍ୟ ପଢ଼ିଲୁ ଯେ ଆମ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ତାଙ୍କର ଅପୂର୍ବ କର୍ତ୍ତବ୍ୟନିଷ୍ଠା ସକାଶେ ରାଷ୍ଟ୍ରପତି ପଦକ ପାଇଛନ୍ତି । ଏବଂ ମୋ'ର ଏବେବି ମନେ ଅଛି, ଯେଉଁଦିନ ହେଡ଼ମାଷ୍ଟ୍ରେ ଦିଲ୍ଲୀରୁ ରାଷ୍ଟ୍ରପତିଙ୍କ ପଦକ ପାଇ ଫେରିଲେ ସେଦିନ ଆମେ ତିନି ମାଇଲ ଦୂରରେ ଥିବା ଷ୍ଟେସନରୁ ତାଙ୍କୁ ଫୁଲ ମାଳରେ ସଜେଇ, ଶଗଡ଼ରେ ବସେଇ, ନିଜେ ସବୁ ଶଗଡ଼ ଭିଡ଼ି ଭିଡ଼ି, ଡ୍ରମ୍ ବିଗୁଲ ବଜେଇ, ସମସ୍ତ ଅଞ୍ଚଳ ଶୋଭାଯାତ୍ରାରେ ପରିକ୍ରମା କରି ବିଦ୍ୟାଳୟକୁ ବରଣ କରି ଆଣିଥିଲୁ । ମୋ'ର ଏବେବି ସ୍ପଷ୍ଟ ମନେ ଅଛି ଶୋଭାଯାତ୍ରାର ପଛେ ପଛେ ମୋ'ର ଚିର-ନମସ୍ୟ ସେହି ଶିକ୍ଷକ ମହାଶୟ ମୁହଁଟି ତଳକୁ ପୋତି ନୀରବରେ ଚାଲୁଥିଲେ । ସମ୍ବର୍ଦ୍ଧନା ସରିଗଲା ଉତ୍ତାରୁ ସେହିପରି ନୀରବରେ ଘରକୁ ବାହୁଡ଼ିଗଲେ ।

(୩)

ମୋ'ର ପ୍ରିୟ ପାଠକ ପାଠିକା ମାନେ ମତେ କ୍ଷମା କରିବେ । ଦେଖନ୍ତୁ; ମୁଁ ଢିଙ୍କିଶାଳରୁ ଯାଇ ଢେଙ୍କାନାଳରେ ପହଞ୍ଚିଗଲିଣି । ପ୍ରକୃତରେ ମୁଁ ଯେଉଁ କାହାଣୀଟି ଲେଖିବାକୁ ଆରମ୍ଭ କରିଥିଲି—ସେଗୋଟିଏ ବିଦ୍ରୋହୀ ଚରିତ୍ରକୁ ମୂଳ କେନ୍ଦ୍ର କରି—ଦେଖୁଛି ତା' ଆଉ ସମ୍ଭବ ହେଉନାହିଁ । ମୁଁ ସ୍ୱା ଭିତରେ ଯେତେଥର ଚେଷ୍ଟା କଲି ମୋ'ର ସ୍ୱପ୍ନ ଚରିତ ଚନ୍ଦ୍ରଧର ମାଷ୍ଟ୍ରଙ୍କୁ ସାଂପ୍ରତିକ ସମାଜର ଭଣ୍ଡାମି, ଛଳନା, ପ୍ରତାରଣା ଇତ୍ୟାଦି ବିରୁଦ୍ଧରେ ଏକ ଆଗ୍ନେୟ ସ୍ଫୁଲିଙ୍ଗ ଭାବରେ ଚିତ୍ରଣ କରିବାକୁ, କାହିଁକି କେଜାଣି, ବାରମ୍ବାର ମୋ' କଲମ ମୁନର ଠିକ୍ ଆଗରେ ମୋ'ର ସେହି ଚିର-ନମସ୍ୟ ଶିକ୍ଷକ ମହାଶୟ ଆସି ଛିଡ଼ା ହୋଇ ପଡ଼ୁଛନ୍ତି । କିନ୍ତୁ ଦେଖନ୍ତୁ, କିଛି ସେ କହୁ ନାହାନ୍ତି, ତାଙ୍କ ଆଖିରେ ଭାଷା ନାହିଁ, ସେ ସଂପୂର୍ଣ୍ଣ ନୀରବ । ନୀରବରେ ଦିନେ ଯେପରି ସେ ହେଡ଼ମାଷ୍ଟ୍ରଙ୍କ ସାମନାରୁ

ଚାଲି ଆସିଥିଲେ । ନୀରବରେ ଯେବେ ଯେପରି ସେ ହେଡ଼ମାଷ୍ଟରଙ୍କ ସମ୍ବର୍ଦ୍ଧନା-ଶୋଭାଯାତ୍ରାର ପଛେ ପଛେ ଚାଲିଥିଲେ, ତାପରେ ଯେପରି ସେ ନୀରବରେ ଜଳଖିଆ ଥାଳିରୁ ହଠାତ୍ ଉଠିପଡ଼ି ଦାଣ୍ଡ ଘରକୁ ଚାଲି ଆସିଲେ, ଦାଣ୍ଡଘରୁ ବାହାର ବାରଣ୍ଡା, ବାରଣ୍ଡାରୁ ରାସ୍ତା, ରାସ୍ତାରେ ରାସ୍ତାରେ କୁଆଡେ କୁଆଡ଼େ ସେ ଚାଲିଲେ, ପାଗଳପରି ଉଦ୍‌ଭ୍ରାନ୍ତଙ୍କ ପରି ବର୍ତ୍ତମାନ ମୋର ମନେ ହେଉଛି, ଧରଯାଉ, ଯେବେ ଆମର ଏଇ ବାସ୍ତବ ଜଗତରେ, ଏଇ ଖିଆପିଆ ନାଚ ଗୀତ ଧୂମ୍‌ଧାମ—ମଜ୍‌ଲିସ ଚାଲିଥିବା ଜଗତରେ ମନେ କରାଯାଉ ହଠାତ୍ ଯେବେ ଏହିପରି ହେଲା—ଯେ ଏ ପୃଥିବୀର ଯେତେକ ସନ୍ଥ, ଯେତେକ ସଚ୍ଚୋଟ, ଯେତେକ ନିଷ୍ଠାପର, ମୋଟ କଥାରେ, ଯେତେକ ଭଲ ଲୋକ, ସେମାନେ ସମସ୍ତେ ହଠାତ୍ ଯେବେ ପାଦାନ୍ତାରେ ଲକାଡ଼କି ହୋଇ ଧାଡ଼ି ବାନ୍ଧି ଗୋଟିଏ ଶୋଭାଯାତ୍ରାରେ ନୀରବରେ ରାସ୍ତାରେ ରାସ୍ତାରେ ବାହାରି ଗଲେ ଏ ଜଗତ ଛାଡ଼ି, ଏ ପୃଥିବୀ ଛାଡ଼ି, ଏ ସବୁକିଛୁକୁ ପଛରେ ରଖି କେଉଁ ଏକ ଅଜଣା ଉଦ୍ଦେଶ୍ୟରେ, ଅଭିମାନରେ, ନୀରବରେ । ତେବେ ? ସେହିପରି ଦିନ ଯଦି ସତକୁ ସତ କେବେ ଆସେ ?

( ୧୯୭୯ )

# ଚାନ୍ଦୁ ଓ ତା'ର ସଧାହ୍ନ

ମୋ ସପ୍ତମ ଶ୍ରେଣୀ 'ଷାଣ୍ମାସିକ' ପରୀକ୍ଷା ଭୂଗୋଳ ପର ଦିନ ଶ୍ରେଣୀ ଗୃହକୁ ପ୍ରବେଶ କରୁକରୁ ମୁଁ ଦେଖିଲି ଯେ ମୋର ଅତ୍ୟଧିକ ବିଳମ୍ବ ହୋଇଯାଇଛି । ଉପସ୍ଥାନ ନିଆ ସରିଯାଇଛି । ଛାତ୍ରଛାତ୍ରୀମାନେ ମନୋଯୋଗ ସହକାରେ ଉତ୍ତର ଲେଖୁଛନ୍ତି । ମୋ'ସ୍ଥାନ ଥାଏ ଦ୍ଵିତୀୟ ଧାଡ଼ିରେ । ତରତର ହୋଇ ସେଠାକୁ ଗଲାବେଳେ ମୋ' ଡେହରି କହୁଣୀ ବାଜି ପାଖ ଡେସ୍କ ଉପରେ ଥିବା କାଳିଘଡ଼ି ଗୋଟିଏ ତଳେ ପଡ଼ି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । କେବଳ ସେତିକି ନୁହେଁ, ମୋ' ଖାକିଜର ଉଲସର, ପ୍ୟାଣ୍ଟ ଓ ଆଣ୍ଠୁଯାକରେ କାଳି ଲାଗିଯାଇ କିମ୍ଭୂତ ଦେଖାଗଲା ।

ଉକ୍ତ କାଳି ଘଡ଼ିଟିର ମାଲିକାଣୀ ଚିନୁ ପ୍ରଥମେ କିଛି ସମୟ ମୋ' ମୁହଁକୁ ଅବାକାବା ହୋଇ ଚାହିଁରହିବା ପରେ ହଠାତ୍ ଭେଁ କିନା କାନ୍ଦିପକେଇଲା ଓ ତତ୍‌ପରେ ହଠାତ୍ ପୁଣି ହସିଦେଲା । ତାହାର ଏତାଦୃଶ ବ୍ୟବହାର ପରେ ମୁଁ ବିସ୍ମୟ ପ୍ରକାଶ କରିବାର ଅବକାଶ ପାଇବା ପୂର୍ବରୁ ଦେଖିଲି ଯେ ଶ୍ରେଣୀଗୃହର ସମସ୍ତ ଛାତ୍ରଛାତ୍ରୀ ତଥା ଉପସ୍ଥିତ ଶିକ୍ଷକମାନେ ସମସ୍ତେ ମୋ' ମୁହଁକୁ ଚାହିଁ ହସିବାରେ ଲାଗିଛନ୍ତି । ଶେଷରେ ମୁଁ କାନ୍ଦ କାନ୍ଦ ହୁଅନ୍ତେ ଶିକ୍ଷକମାନେ ହାସ୍ୟ ସମ୍ବରଣକରି ବିଶଦଭାବେ ବୁଝାଇଦେଲେ ଯେ ମୋ' ଡେହରି ହାତ ପଛପାଖେ କାଳି ପଡ଼ି-ଯାଇଥିଲା ଓ ସେହି ହାତରେ ମୁଁ ମୁହଁର ଝାଳ ପୋଛିବାରୁ ଶ୍ରେଣୀଗୃହରେ ଏପରି ହାସ୍ୟରୋଳ ସୃଷ୍ଟି ହେଲା । ଏହାପରେ ଚିନୁ ପୁଣି କାନ୍ଦ କାନ୍ଦ ଅଭିଯୋଗ କଲା ଯେ ତାହାର କାଳି ଘଡ଼ିଟି ଭାଙ୍ଗିଯାଇଥିବାରୁ ସେ ପରୀକ୍ଷା ଦେବ କେମିତି ? ପ୍ରକୃତ-ପକ୍ଷେ ମୁଁ ଦୋଷୀ ସାବ୍ୟସ୍ତ ହେବାରୁ ଦଣ୍ଡସ୍ୱରୂପ ମୋ' ଡେସ୍କକୁ ଚିନୁ ଡେସ୍କ ସହିତ ଯୋଡ଼ି, ମୋ' କାଳି ଘଡ଼ିଟିକୁ ଦୁଇ ଡେସ୍କ ମଝିରେ ରଖି ମତେ ପ୍ରଶ୍ନୋ-ତ୍ତର ଲେଖିବାକୁ ପଡ଼ିଲା ।

ପ୍ରଶ୍ନୋତ୍ତର ଲେଖିବା ମଝେ ମଝେ ମୁଁ ଲକ୍ଷ୍ୟ କରୁଥିଲି ଯେ ଚିନୁ ତା' କାଠି କଲମଟିକୁ ଦାନ୍ତରେ କାମୁଡ଼ି ବସିରହୁଛି ଓ ବହୁତ ସମୟ ପରେ ପଦେ ଅଧେ ଲେଖୁଛି । ତାହାର ଏତାଦୃଶ ଦୁର୍ଦ୍ଦଶା ଦେଖିବାକୁ ମତେ ଭାରି ମଜା ଲାଗୁଥିଲା । କାରଣ ଗତବର୍ଷ ବାର୍ଷିକ ପରୀକ୍ଷାରେ ଆମ ଶ୍ରେଣୀରେ ସେଇ କେବଳ ପାଞ୍ଚଖଣ୍ଡି-ଯାକ ଅଙ୍କ ଠିକ୍ କରିଥିଲା । ଯାହା ଫଳରେ ଅଙ୍କ ମାଷ୍ଟ୍ରେ ହରିବାବୁ ତା' ହାତରେ ଆମ ସମସ୍ତଙ୍କ କାନ ମୋଡ଼ାଇଥିଲେ । 'ଷାଣ୍ମାସିକ' ପରୀକ୍ଷାରେ ମୁଁ ଏହାର ଚରମ

ପ୍ରତିଶୋଧ ନେବ ବୋଲି ପ୍ରତିଜ୍ଞା କରିଥିଲି । ତେଣୁ ଗୁନୁର ଦୁର୍ଦ୍ଦଶା ଦେଖି ମୁଁ ମନେ ମନେ କୌତୁକ ହେଉଥିଲି ଓ ସେ ମୋ' ଖାତା ଉପରକୁ ଝୁଙ୍କି ପଡ଼ୁଥିବାରୁ ମୋ' ପ୍ରଶ୍ନୋତ୍ତରକୁ ମୁଁ ତେଣିକି ହାତରେ ଘୋଡ଼େଇ ରଖିଲି । ଏହାପରେ ଗୁନୁ ପୁଣି କାନ୍ଦିବାକୁ ଆରମ୍ଭ କଲା । ରାଧାମାଷ୍ଟ୍ରେ କାରଣ ଜାଣିବାକୁ ଚାହିଁନ୍ତେ ସେ କହିଲା ଯେ ତା' କାଳିଘଡ଼ି ଭାଙ୍ଗି ଯାଇଥିବାରୁ ସେ କିଛି ଲେଖିପାରୁନି । ରାଧାମାଷ୍ଟ୍ରେ ପାଖକୁ ଆସି, ତା' ମୁଣ୍ଡରେ ହାତ ବୁଲାଇ କହିଲେ ଯେ କାଳି ଭାଙ୍ଗି ଯିବାଟା ଶୁଭ ଲକ୍ଷଣ । ତେଣୁ ତା'ର ଆଜି ପରୀକ୍ଷାରେ ଖୁବ୍ ଭଲ ହେବ ।

ପରୀକ୍ଷା ସରିବା ଉତ୍ତାରୁ ଶ୍ରେଣୀ ଗୃହରୁ ବାହାରି ଆସି ଆମେ ପରସ୍ପର ମଧ୍ୟରେ ଉତ୍ତର ଆଲୋଚନା କଲୁ । ସେଥିରେ ଦେଖାଗଲା ଯେ ଗତବର୍ଷ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଓ ଆମ ସମସ୍ତଙ୍କ କାନ ମୋଡ଼ିଥିବା ଗୁନୁ ପରୀକ୍ଷା ଖାତାରେ ନିମ୍ନ ପ୍ରକାରେ ଉତ୍ତର ଲେଖିଛି : 'ରାଣୀଗଞ୍ଜରେ ସବୁଠାରୁ ବେଶି ବର୍ଷା-ହୁଏ,' 'ଆମେରିକାର ରାଜଧାନୀ ହେଉଛି ନିଉୟର୍କ,' 'ମହାନଦୀର ଉତ୍ପତ୍ତି ସ୍ଥଳ ବିନ୍ଧ୍ୟ ପର୍ବତ ଓ ସଙ୍ଗମ ସ୍ଥଳ ପ୍ରୟାଗ' ଇତ୍ୟାଦି । ସେ ଏହିପ୍ରକାର ଉତ୍ତର ଲେଖିଛି କହିବାରୁ ଶ୍ରେଣୀର ଛାତ୍ରଛାତ୍ରୀମାନେ ତାକୁ ଘେରିଯାଇ ହସିବାକୁ ଲାଗିଲେ । ଏପରିକି ଷଷ୍ଠଶ୍ରେଣୀକୁ ଓ'ମେରିଟ୍‌ରେ ଉତ୍ତୀର୍ଣ୍ଣ ହୋଇଥିବା ତା' ଦାଙ୍ଗ ଶୈଳ ମଧ୍ୟ ତାକୁ ବହୁତ ଚିଡ଼େଇଲା । ଗୁନୁ ସମସ୍ତଙ୍କ ମୁହଁକୁ ଚାହିଁଲା ଓ ଶେଷରେ ଦୌଡ଼ିଯାଇ ବିଦ୍ୟାଳୟ ପାଚେରି ପାଖରେ ଥିବା ଟଗର ଗଛମୂଳେ ଛିଡ଼ାହୋଇ ଏପରି ଭାବେ ଭୁହାଇ ଭୁହାଇ କାନ୍ଦିବାକୁ ଲାଗିଲା ଯେ ମୋ' ହୃଦୟ ତରଳିଗଲା । ମୁଁ ମୋର ପ୍ରତିଶୋଧ କଥା ଭୁଲିଯାଇ ତତ୍‌କ୍ଷଣାତ୍ ତା' ପାଖକୁ ଯାଇ ବହୁତ ବୁଝାଇଲି ଯେ ରାଧାମାଷ୍ଟ୍ରେ କହିବାନୁଯାୟୀ କାଳିଘଡ଼ି ଭାଙ୍ଗି ଯାଇଥିବା ସୌଭାଗ୍ୟରୁ ପରୀକ୍ଷାରେ ତା'ର ଭଲ ହେବା ନିଶ୍ଚିତ । ସେ ସବୁ ଭୁଲ ଉତ୍ତର ଲେଖିଛି ବୋଲି ମୁକ୍ତିକରି ପୁଣି ଭେଁ ଭେଁ ହୋଇ କାନ୍ଦିବାରୁ ମୁଁ ତାକୁ କହିଲି ଯେ ଭୂଗୋଳ ମାଷ୍ଟ୍ରେ ଟିକାଡ଼ୋଲା ନାରାୟଣ ବାବୁ ସନ୍ଧ୍ୟାବେଳେ ଗାଁ ଗୋପାଢ଼ୀ ଉପରେ 'କଛେବାର' କୁହାଟ ଛାଡ଼ନ୍ତି ଓ ପରୀକ୍ଷା ଖାତା ଦେଖନ୍ତି । ତେଣୁ ତା'ର ଚିନ୍ତା କରିବାର କୌଣସି କାରଣ ନାହିଁ ।

ମାତ୍ର ପରୀକ୍ଷା ଫଳ ବାହାରିବା ପରେ ଦେଖାଗଲା ଯେ ପରୀକ୍ଷାରେ ମୁଁ ପ୍ରଥମ ସ୍ଥାନ ଅଧିକାର କରିଅଛି ଓ ଗୁନୁ ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି । ତା' କାଳି ଘଡ଼ି ଭାଙ୍ଗି ଯିବାସତ୍ତ୍ୱେ ପରୀକ୍ଷା ଫଳ ଏପରି କାହିଁକି ହେଲା ବୋଲି ଗୁନୁ ମତେ ରାଗିଯାଇ ପ୍ରଶ୍ନ କରିବାରୁ, ଗତବର୍ଷର କାନମୋଡ଼ା କଥା ସ୍ମରଣ କରି ମୁଁ ମୁରୁକି ହସି ଛାତି ଫୁଲେଇ କହିଲି—"ଆଲୋ ଓଲି, ମୋ' କାମିଜରେ ତ କାଳି

ଇଡ଼ିଲା, ତୋ'ର କେମିତି ଭଲ ହୁଅନ୍ତା ? ତୋ' ଜାମାରେ କାଳି ଇଡ଼ି ଥିଲାକି ?"
ଏହାଶୁଣି ଗୃନୁ ମୋ' ମୁହଁକୁ ବଲ ବଲ ଆଖିରେ ଗ୍ହିଁରହିଲା; ମାତ୍ର ତହିଁ ଦିନ
ଅପରାହ୍ଣରେ ଆମ ଗାଁ ହାଟ ସାହୁଙ୍କ ଚାଳିରେ ବନ୍ଦୀ ପକେଇ ମୁଁ ଗୁଡ଼ଚଣା
ବସି ଖାଉଥିବାବେଳେ ହଠାତ୍ ମୋ' ପିଠି ଉପରେ ଦି' ଗୋଇଠା ଦୁମ୍ ଦୁମ୍ ବସାଇ
ମୁହଁ ବୁଲାନ୍ତେ ଦେଖିଲି, ଦୌଡ଼ିଯାଇ ଅନତି ଦୂରରେ ଠିଆହୋଇ ପଡ଼ି ଗୃନୁ
କହୁଛି—"କେମିତି ମଜା ? କେମିତି ମଜା ?" × × ×

ସେ ବର୍ଷ ବାର୍ଷିକ ପରୀକ୍ଷା ସରିଲା ପରେ ଛୁଟିରେ ମୁଁ କୁଣିଆ ଘର ଗଲି
ଓ ସେଠାରୁ କିଛିଦିନ ପରେ ଲେଉଟି ଆସିଲାପରେ ଶୁଣିବାକୁ ପାଇଲି ଯେ ଆସନ୍ତା
ଆଷାଢ଼ରେ ଗୃନୁର ବାହାଘର । ଏହା ଶୁଣି ରାଗରେ ମୋ' ପିତ୍ତ ଜଳିଗଲା ।
କାରଣ ସେ ମୋ' ଠାରୁ 'ଦସ୍ୟୁ ରତ୍ନାକର' ବହିର ଟିକିଏ ଖଣ୍ଡିଏ ନେଇ ଯାଇଥିଲା,
ତାହା ଫେରାଇ ନ ଥିଲା । ବହିଟିକୁ ଶାଶୁଘର ଗଲାବେଳେ ସାଙ୍ଗରେ ନେଇଯାଇ
ମତେ ହରକତ କରିବା ଦୁରଭିସନ୍ଧି ମନରେ ପୋଷଣ କରିଛି ସନ୍ଦେହ କରି ମୁଁ ଆଉ
କାଳବିଳମ୍ବ ନ କରି ତା' ଘରକୁ ଗଲି । ଗୃନୁ ସେତେବେଳେ ଅଗଣାରେ ବସି
ଗୁହାଳ ପାଳୁଥିଲା । ମୁଁ ମୋ' 'ଦସ୍ୟୁ ରତ୍ନାକର' ବହିଟି ମାଗିବାରୁ କହିଲା—"ମୁଁ
ଦେବିନି ।" ମୋ' ସନ୍ଦେହ ଡହୁଁ ଦୃଢ଼ୀଭୂତ ହେବାରୁ ମୁଁ ରାଗରେ ପାଚିଯାଇ
କହିଲି—"ଦେ' କହୁଛି, ନଇଲେ ଜାଣିଛୁଟି କ'ଣ କରିବି ?" ଗୃନୁ ମୋ' କଥାକୁ
ଭ୍ରୂକ୍ଷେପ ନକରି ମାଇପିଙ୍କ ପରି ହସିଦେଇ କହିଲା—"କଅଣ କରିବୁ, କରୁନୁ ।"
ମୋ' ଆରକ୍ତ ମୁହଁରେ ପ୍ରକାଶକରି ସତର୍କ କରିଦେବା ପରେ ବି ଗୃନୁ ଯେ ମୋ
ଆରକ୍ତକୁ ଏପରି ଉପହାସ କରିବ, ଏହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି । ଏଣୁକରି
ବର୍ତ୍ତମାନର ସଙ୍କଟ-ଜନକ ପରିସ୍ଥିତିରେ ମୋ'ର କର୍ତ୍ତବ୍ୟ ସ୍ଥିର କରି ନପାରି ମୁଁ
ହଠାତ୍ ଗମ୍ଭୀର ଭିତରେ କାଠ ବାକ୍ସରେ ଗୃନୁ ଯେଉଁଠି ବହିରଖେ, ସେଇ
ଆଡ଼କୁ ମାଡ଼ିଗଲି । ଗୃନୁ କୁଳ ଫୋପାଡ଼ି ଦେଇ "ଏଇ ମୋ ବହିରେ ଲାଗନା,
ଲାଗନା କହୁଛି" କହୁ କହୁ ମୋ' ପଛେ ପଛେ ଦୌଡ଼ିଆସିଲା; ମାତ୍ର ମୁଁ ତାର
କୌଣସି କଥାରେ କର୍ଣ୍ଣପାତ ନ କରି ବହି ବାକ୍ସଟା ଘୋଷାରି ଆଣିବାକୁ ଉଦ୍ୟତ
ହେବାରୁ ସେ ହଠାତ୍ ତା ମୁଣ୍ଡ ଉପରେ ଥିବା ଠଣା ଭିତରୁ କାଳି ଦଉଟେ ବାହାର
କରି ଆଣି କହିଲା "ଦେ', ହାତ ଦେ, ମୋ' ବହିରେ, ଦେଖିବୁ ମଜା, ସବୁ ସ୍ୟାହି
ତୋ' ଉପରେ ଢ଼ାଳି ଦେବି, ହୁଁ ।" ମାତ୍ର ତଥାପି ମୁଁ ତା' କଥାରେ କୌଣସି
କର୍ଣ୍ଣପାତ ନ କରିବାରୁ ସେ, "ଏଇ, ସ୍ୟାହି ଢାଳିଦେବି କହୁଛି, ସ୍ୟାହି ଢ଼ାଳି
ଦେବି କହୁଛି, ହୁଁ" କହୁ କହୁ ସତକୁ ସତ ମୋ' ଉପରକୁ ସବୁ ଡକ କାଳି ଛୁଟି-
ଦେଲା ।

ମୋ' 'ଦସ୍ୟୁ ରବାନ୍' ବହି ଗାଏବ୍ କରିବାର ଦୁରଭିସନ୍ଧି, ମୋ' ବାରମ୍ବାର ପ୍ରତି ଉପହାସ ଓ ସର୍ବୋପରି ମୋ' ଉପରେ କାଳି ଗୁଣ୍ଡିଦେଇ ମାଟିଆ କରିଦେବା- ଏସବୁ ସତ୍ତ୍ୱେ ତା' ଉପରେ କୌଣସି ପ୍ରତିଶୋଧ ନେଇପାରୁନାହିଁ ଦେଖି ମୁଁ କିଛି ସମୟ କିଂକର୍ତ୍ତବ୍ୟବିମୂଢ଼ ପରି ଛିଡ଼ାହୋଇ ରହିଲି ଓ ତା'ପରେ ହଠାତ୍ ସେହି- ଠାରେ ରୁନୁ ଆଗରେ କାନ୍ଦି ପକେଇଲି; ମାତ୍ର ତଥାପି ରୁନୁର ନିଷ୍ଠୁର ହୃଦୟ ତରଳିଲା ନାହିଁ ଯେ ସେ ମନେ ଅଧିକ ଚିଡ଼େଇବାକୁ ଲାଗିଲା—"ଏ ମା ! ମାଇ- କିନିଆଙ୍କ ପରି କାନ୍ଦୁଛି କେମିତି । ଏଁ !" ରୁନୁ ନିଷ୍ଠୁରତାର ଚରମସୀମା ଅତି- କ୍ରମ କରୁଥିବା ଦେଖି ମୋ' କ୍ରନ୍ଦନ ବେଗ ଅଧିକ ହେଲା ଓ ମୁଁ ସେଠାରୁ ତତ୍- କ୍ଷଣାତ୍ ପଳାଇ ଆସିବାକୁ ଉଦ୍ୟତ ହେବାରୁ ରୁନୁ ଡାଆଣିଙ୍କ ପରି ମୋ' ହାତ ଧରି ଟାଣିଆଣିଲା ଆଉ କହିଲା—"ଏ ମା ! ଏମିତି ରାଗୁଛ କାହିଁକି, ମୁଁ ତ ତୋଓ ଉପରେ ସ୍ୟାହି ଢାଳିଲି । ତୋଓର ଭଲ ହେବ । ମୋ'ର କ'ଣ ହେବ କି ?" ମାତ୍ର ମୁଁ ସେତେବେଳକୁ ଅପମାନ ଜ୍ୱାଳାରେ ଏପରି ଜର୍ଜରିତ ହୋଇପଡ଼ିଥିଲି ଯେ ତା' ହାତକୁ ଛାଟିଦେଇ ଦୌଡ଼ି ପଳେଇ ଆସିଲି ।

ଏହି ଘଟଣାର ତିନି ହପ୍ତା ପରେ ରୁନୁ ବାହାହୋଇ ଶାଶୁଘର ଚାଲିଗଲା । ମୋ' ଅପମାନର ଜ୍ୱାଳା ତଥାପି ଲିଭି ଯାଇ ନ ଥିବାରୁ ମୁଁ ତା ବାହାଘରକୁ ଯାଇ ନଥିଲି ! ପରେ ବୌଉଠାରୁ ଶୁଣିବାକୁ ପାଇଲି ଯେ ମୁଁ 'ବେମ ବଟର ପଢ଼ୁଛି କି ?' ବୋଲି ବାହାଘର ଦିନ ରୁନୁ ତାକୁ ପଚାରୁଥିଲା ।

( ୧୯୬୯ )

# ମୃଷାଗାଢ

ଡଃ ସାମଲ୍‌ଙ୍କ କ୍ଲିନିକ୍‌ରୁ ବାହାରି ଆସି ଦୁଆରବନ୍ଧ ପାଖରେ କିଛି ସମୟ ପାଇଁ ଠିଆହୋଇ ପଡ଼ିଲା ଯୁବକଟି । ଏକ ଦୀର୍ଘଶ୍ୱାସ ଛାଡ଼ିଲା । ମୁହଁ ଉଠାଇ ଉପରକୁ ଚାହିଁଲା । ଆକାଶରେ ଥାକ ଥାକ ହୋଇ କଳା ମେଘ ଜମି ଆସୁଥାଏ । ଦୂରରୁ ପତଳା ଅନ୍ଧାର ଧୀରେ ଧୀରେ ଘୋଟି ଆସୁଥାଏ । ଆସନ୍ନ ସନ୍ଧ୍ୟାର ହାଲ୍‌କା ଅନ୍ଧାରୁଆ ପରିବେଶ ସହିତ ଆକାଶର ଥାକ ଥାକ କଳା ମେଘ ମିଶି ଯୁବକଟିର ମନ ଭିତରେ କପରି ଏକ ଅଜଣା ଭୟଭାବ ଜମାଟ ବାନ୍ଧି ଦେଲା ।

ଯୁବକଟି ହଠାତ୍ ଭାବିଲା—ମୁଁ ହୁଏତ ମରିଯିବି । ଏବଂ ଏହି ଭାବନା ସାଥେ ସାଥେ ସେ ଅନୁଭବ କଲା ଯେପରି ତା'ର ମୁମୂର୍ଷୁ ଆତ୍ମା ଭେଦି ହିମ ହାଓ୍ୱା ଦଲ୍‌କାଏ ବୋହିଗଲା । ମୁହୂର୍ତ୍ତିକ ପାଇଁ ମାତ୍ର । ତା'ପରେ ସେ ପୁଣି ରାସ୍ତା ଉପରେ ଚାଲିବାକୁ ଆରମ୍ଭ କଲା ।

ରାସ୍ତାଟି ଆସ୍ତେ ଆସ୍ତେ ଖାଖ ହୋଇ ଉପରକୁ ଉଠି ଯାଇଛି । ସାମନାରୁ ଖୁବ୍ ଜୋର୍‌ରେ ପବନ ବୋହିବାକୁ ଆରମ୍ଭ କରିଥାଏ । ପବନରେ କପରି ଏକ ଶୀତୁଆ ଆମେଜ୍ ଭରି ରହିଥିବାରୁ ମଝିରେ ମଝିରେ ଯୁବକଟି ଥରି ଉଠୁଥାଏ ।

ଖରସ୍ରୋତ ମଝିରେ ନାବିକଟେ ଆହୁଲା ମାରି ମାରି ତା' ଡଙ୍ଗାଟିକୁ ଭସେଇ ନେଲାପରି ଯୁବକଟି ପବନ ଠେଲି ଠେଲି ଅଳ୍ପ ଖାଖ ହୋଇ ଉପରକୁ ଉଠିଯାଇଥିବା ରାସ୍ତା ଉପରେ ଧୀରେ ଧୀରେ ଚାଲୁଥାଏ । ଚାଲୁ ଚାଲୁ ଯୁବକଟି ଭାବୁଥାଏ ଯେ—ସମତଳ ରାସ୍ତାରେ, ଶାନ୍ତ ବାୟୁମଣ୍ଡଳରେ ନିଶ୍ଚିନ୍ତ ମନରେ ଚାଲିବା ଅପେକ୍ଷା ଏଇମିତି ପବନ ଠେଲି ଠେଲି ଉପରକୁ ଉଠିବାରେ ଯେମିତି ଏକ ବେଶ୍ ଗୌରବ ରହିଛି ।

ବେଳେବେଳେ ଖୁବ୍ ଜୋର୍‌ରେ ଦମ୍‌କା ପବନ ବହି ଯାଉଥାଏ, ନିଃଶ୍ୱାସ ନେବା ପାଇଁ ସେତେବେଳେ ଯୁବକଟିକୁ ଭୀଷଣ କଷ୍ଟ ହେଉଥାଏ । ମୁହଁଟିକୁ କଣପଟିଆ ବୁଲେଇ ନେଇ କିଛି ସମୟ ରହିଯାଏ, ତା'ପରେ ପୁଣି ପବନ ଠେଲିବାକୁ ଆରମ୍ଭ କରେ ।

ଏଇମିତି ଚାଲୁ ଚାଲୁ ଯୁବକଟି ମନେ ମନେ ବେଶ୍ ଗର୍ବ ଅନୁଭବ କରୁଥାଏ । ଏକ ପ୍ରଚ୍ଛନ୍ନ ଗୌରବ, ଏକାନ୍ତ ପ୍ରଚ୍ଛନ୍ନ ଆତ୍ମ ଗୌରବ ଯେ—ମୁଁ

ବଞ୍ଚିଛ । ନିଜକୁ ଆପୁଡେଇ ଆଶ୍ୱାସନା ଦେଲାପରି ଏକ ଯୁକ୍ତି—ଯେ ମୁଁ ବଞ୍ଚିଛି, କାରଣ ମୁଁ ସଂଘର୍ଷ କରୁଛି ଏବଂ ଏହି ସଂଘର୍ଷ ମଧ୍ୟରେ ହିଁ ମୁଁ ନିଜକୁ ଅନୁଭବ କରୁଛି ଏବଂ ଏହି ଅନୁଭବର ଭାଇଟାଲିଟି ହିଁ ମୋ' ସ୍ଥିତିର ଗ୍ୟାରେଣ୍ଟି, କିନ୍ତୁ ହଠାତ୍ ଶାଗୁଣାର ଡେଣାପରି ଆଶଂକାର ଏକ ଲମ୍ବା ଛାଇ ଆସି ଆଗରେ ତା'ର ମେଲ ହୋଇଗଲା—ମୁଁ କ'ଣ ବଞ୍ଚିବ ?

କିଛି ସମୟ ପରେ ଯୁବକଟି ଘର ଆଗରେ ଆସି ଛିଡ଼ା ହୋଇ ଦମ୍ ନେଲା । ବାହାରେ ସେତେବେଳକୁ ବହଳ ଅନ୍ଧାର ଜମି ଗଲାଣି । ବିଜୁଳି ଲାଇନ୍ କଟି ଯାଇଥିବାରୁ ଘରେ ମଧ୍ୟ ଆଲୁଅ ନ ଥାଏ ।

ଯୁବକଟି ଏଥର ଦୁଆର ଠକ୍ ଠକ କଲା । ଭିତରୁ କାହାର କିଛି ସ୍ୱର ଶବ୍ଦ ଶୁଭିଲା ନାହିଁ । ଯୁବକଟି ପୁଣି ଥରେ ଦୁଆର ଠକ୍ ଠକ୍ କଲା । ଭିତରୁ ଏଥର ଏକ ସରୁ କଣ୍ଠରେ ଉତ୍ତର ଆସିଲା—କିଏ ?

ଯୁବକଟି କହିଲା—ମୁଁ ।

କେତୋଟି ମୁହୂର୍ତ୍ତର ସ୍ତବ୍ଧତା ପରେ ଦୁଆର ଫିଟିବାର ଶବ୍ଦ ହେଲା । ଲ୍ୟାମ୍ପ୍ ହାତରେ ଝିଅଟିଏ ଦୁଆର ଖୋଲି ଦେଇ ଅଳ୍ପ କଡ଼କୁ ଘୁଞ୍ଚିଗଲା, ପବନରେ ଲ୍ୟାମ୍ପ୍ ଟା ଲିଭିଯିବ ବୋଲି ।

ଯୁବକଟି ଏତେବେଳ ଯାଏଁ ଅନ୍ୟଆଡ଼େ ମୁହଁ କରି ଛିଡ଼ା ହୋଇଥିଲା । ଦୁଆର ଖୋଲିବାର ଶବ୍ଦରେ ମୁହଁ ବୁଲାଇଲା ।

ଝିଅଟି କହିଲା—ଆରେ, ଶିବ ଭାଇ ?

ଯୁବକଟି ସ୍ମିତ ଭାବେ ହସି ଭିତରକୁ ଯାଇ ଦୁଆର ବନ୍ଦ୍ କଲା । ଝିଅଟି ମଧ୍ୟ ଅଳ୍ପ ହସିଲା, ସୂକ୍ଷ୍ମ, ସାଧାସିଧା ହସ । ତା'ପରେ କହିଲା—ସେ ଘରକୁ ଚାଲ, ବୋଉ ଏକୁଟିଆ ଶୋଇଛି ।

ଯୁବକଟି ନୀରବରେ ଝିଅଟି ପଛେ ପଛେ ଚାଲିଲା । ପ୍ରୌଢ଼ା ଜଣେ ବାରଣ୍ଡା କଣରେ ବସି ମନକୁ ମନ କ'ଣ ଗୁଣୁଗୁଣୁ ହେଉଥାନ୍ତି ।

ଯୁବକଟି ପଚାରିଲା—ବୋଉଙ୍କ ଅବସ୍ଥା ଆଜି କେମିତି ?

ଝିଅଟି ପ୍ରଥମେ କିଛି କହିଲାନି, ତା'ପରେ କହିଲା—ଅବସ୍ଥା ଆଉ କ'ଣ ?

ଯୁବକଟି କହିଲା—ମଝିରେ ମଝିରେ ତ ମୁଣ୍ଡ ଭଲ ଥାଏ ।

ଝିଅଟି କହିଲା—ଆଗେ ତ ସେଇମିତି ଥିଲା । ଏବେ ସବୁବେଳେ ସମାନ ଯାଉଛି । ତମେ ତ ଆସି ନଥିଲ ଯା ଭିତରେ, ପଅରଦିନ ଗୁଡ଼ାଏ ଭଙ୍ଗାଭଙ୍ଗି କରୁଛି ।

ଟେବୁଲ୍ ଉପରେ ଲ୍ୟାମ୍ପ୍‌ଟି ରଖି ସେଇଆଡ଼େ କିଛି ସମୟ ଚାହିଁ ରହିଲା ଝିଅଟି ।

ଯୁବକଟି ଖଟ କଣରେ ବସିପଡ଼ି ପଚାରିଲା—ବାପାଙ୍କର କିଛି ପରିବର୍ତ୍ତନ ହେଲା ?

ଝିଅଟି ନୀରବରେ ସେଇମିତି ବସି ରହିଲା । ଲ୍ୟାମ୍ପ୍‌ର ଶିଖାଟି ବଡ଼ କରୁଥାଏ, ପୁଣି ଛୋଟ କରୁଥାଏ ।

ଯୁବକଟି ପୁଣିଥରେ ପଚାରିଲା—ରାତିରେ ତ ଡ୍ରିଙ୍କ୍ କରି ଫେରନ୍ତି । ଦିନସାରା କ'ଣ କରନ୍ତି ?

ଝିଅଟି ଏଥର ଅସ୍ଥିର ବୋଧକଲା । ଲ୍ୟାମ୍ପ୍‌ର ମଳିନ ଆଲୋକରେ ଯୁବକଟି ଲକ୍ଷ୍ୟ କଲା—ତା'ର ଶୀର୍ଣ୍ଣ ମୁହଁରେ କରୁଣ ବ୍ୟଥାର କେତୋଟି ଅସ୍ପଷ୍ଟ ରେଖା ପରିସ୍ଫୁଟ ହୋଇ ଉଠିଲା । ତା'ପରେ ହଠାତ୍ ଅସହାୟ କଣ୍ଠରେ ଝିଅଟି କହିଲା—ତମେ ମତେ କିଛି ପଚାରନି ଶିବଭାଇ, ମତେ କିଛି ଭଲ ଲାଗୁନି ।

ଏକ ଗଭୀର ସହାନୁଭୂତି-ଭରା ଆଖିରେ ଯୁବକଟି ଝିଅଟି ଆଡ଼େ ଚାହିଁଲା । କିଛି ସମୟ ତା'ପରେ ହଠାତ୍ ପରିବେଶଟିକୁ ହାଲ୍‌କା କରିବା ପାଇଁ କହିଲା—ଠିକ୍ ଅଛି, ତୁ ଟିକେ ଚାହା କରିଦେ ମୋ ପାଇଁ । ଯୋଉ ଥଣ୍ଡା ପବନରେ ମୁଁ ଆସିଲିନା, ଉସ୍‌ସ୍ ।

ଝିଅଟି ହସିଦେଇ ରୋଷେଇ ଘରକୁ ଚାଲିଗଲା ।

ଯୁବକଟି ଅକାରଣରେ କୋଠରୀର ଚାରିଆଡ଼େ ଆଖି ବୁଲେଇ ଆଣିବାକୁ ଲାଗିଲା—ଲ୍ୟାମ୍ପ୍‌ର ସ୍ତିମିତ ଆଲୋକ, ଘରର ମଳିନ ପରିବେଶ, ଆଉ ବାହାରର ସାଁ ସାଁ ପବନରେ ସମଗ୍ର କୋଠରୀଟିକୁ କୌଣସି ଏକ ବସ୍ତିରେ ବସି ଚୁପ୍ ଚାପ୍ ଝିମେଉଥିବା ଏକ ଶ୍ରାନ୍ତ ଶ୍ରମିକ ପରି ମନେହେଲା ।

ଟେବୁଲ୍ ଉପରେ ଇତସ୍ତତଃ ହୋଇ ପଡ଼ିଥିବା ବହି ଓ ଖାତାଗୁଡ଼ାକୁ ଅନ୍ୟମନସ୍କ ଭାବେ ଓଲଟପାଲଟ କରୁ କରୁ ଗୋଟିଏ ଚିଠି ବାହାରିଲା ।

ଯୁବକଟି ପଢ଼ିଲା । ଅଙ୍କାବଙ୍କା ଅକ୍ଷରରେ ଲେଖା ହୋଇଥିଲା—ମାନନୀୟା ଦିଦି, ଏତଦ୍ୱାରା ଆପଣଙ୍କୁ ସାବଧାନ କରି ଦିଆଯାଉଛି ଯେ ଶ୍ରେଣୀର ଅନ୍ୟ ଛାତ୍ରୀମାନଙ୍କ ପ୍ରତି ଯେଉଁ କଠୋର ଶାସ୍ତି ବିଧାନ କରୁଛନ୍ତି, ଆପଣଙ୍କ ସ୍ନେହାଧୀନା ଭଗିନୀ ଓରଫ୍ ନିରୁପମା ଦେବୀଙ୍କ ପ୍ରତି ଯଦି ତାହା ଲାଗୁ ନ କରାଯାଏ, ତେବେ ପରିସ୍ଥିତି ଅତ୍ୟନ୍ତ ଜଟିଳ ହେବାର ଆଶଙ୍କା ଅଛି । ଇତି, ଆପଣଙ୍କର କେତେଜଣ ଅନୁଗୃହୀତା ଛାତ୍ରୀ ।

ଚିଠିଟି ପଢ଼ି ଯୁବକଟିକୁ ପ୍ରଥମେ ହସ ଲାଗିଲା । ତା'ପରେ କିପରି ଏକ ଉଦ୍‌ବେଗର ଚିହ୍ନ ଉକୁଟି ଉଠିଲା ମୁହଁରେ । ଯୁବକଟି ଭାବିଲା—ମୀନା କେତେ ଦୁଃଖ କଷ୍ଟ ସହି ଚାଲିଛି । ଏତେ କଷ୍ଟ ଭିତରେ ବି' ବଞ୍ଚିବା ପାଇଁ ଲଢ଼ି ଚାଲିଛି । କାହିଁକି ସେ ସବୁ ସହିଯାଉଛି ସେ ? ମୋ ପାଇଁ ? ମୋ' ଉପରେ ଭରସା ରଖି ?

ବାହାରେ ହଠାତ୍ ପବନ ବୋହିବାକୁ ଆରମ୍ଭ କଲା । ଝରକାର କଣା ଦେଇ ଝାଁ ସାଁ ଶବ୍ଦ ହେବାକୁ ଲାଗିଲା ।

ଚା' କପ୍ ହାତରେ ଝିଅଟି ଘର ଭିତରକୁ ଆସିଲା । କପ୍‌ଟି ନେଇ ଗୋଟିଏ ଚୁମୁକ୍ ଦେଇ ଯୁବକଟି ଅସଂଲଗ୍ନ ଭାବେ କ'ଣ ଗୁଡ଼ାଏ ଭାବିଯିବାକୁ ଲାଗିଲା ।

ଦୁଆର ଆଡ଼େ ଚାହିଁ ଝିଅଟି କହିଲା—ଇସ୍, କି ଜୋର୍‌ରେ ବର୍ଷା ପଡ଼ିଲାଣି ।

ଯୁବକଟି ମୁହଁ ଉଠାଇ ଚାହିଁଲା ଏବଂ ହଠାତ୍ ଝିଅଟିର ମୁହଁରେ ଯେପରି କିଛି ଆବିଷ୍କାର କରିପାରି ଆଶ୍ଚର୍ଯ୍ୟ ହେଲା ଏବଂ ବୁଝି ପାରିଲାନି ମୀନା ଏବେ ସୁଦ୍ଧା ବେଶ୍ ନିଶ୍ଚିନ୍ତ ଅଛି କିପରି ? ଚଉରା ମୂଳେ ସଞ୍ଜ ଦେଉଥିବା ଗାଉଁଲି କିଶୋରୀର ମୁହଁ ପରି ଏକ ସମର୍ପଣ-ଜନିତ ନିଶ୍ଚିନ୍ତତାର ପ୍ରଲେପ । ଆଶ୍ଚର୍ଯ୍ୟ ! ଯୁବକଟି ମୁହଁ ତଳକୁ ପୋତିଲା । ଏବଂ ତା' ଛାତି ଭିତରେ କିପରି ଏକ କାରୁଣିକ ଦୁଃଖବୋଧ ଖେଳିଗଲା—ମୁଁ କ'ଣ ତେବେ ତା'ର ନିଶ୍ଚିନ୍ତତାର କାରଣ ? ଖୁଣ୍ଟି ଉପରେ ଭର ନ ଦେବାପରି କ'ଣ ସେ ମୋ'ର ଉପରେ ସମସ୍ତ ଭର ଦେଇ ବସି ରହିଛି, ଏବଂ ଏଇମିତି ଚିରଦିନ ରହିବ ବୋଲି ଭାବି ଚାଲିଛି ? କିନ୍ତୁ ଖୁଣ୍ଟଟା ଯେ ତା' ଅଜାଣତରେ ଭିତରେ ଭିତରେ ଘୁଣ ଖାଇ ନଷ୍ଟ ହୋଇ ଯାଉଛି, ରୁଗଣ, ଦୁର୍ବଳ ହୋଇ ପଡ଼ୁଛି—ହୁଏତ କେଉଁଦିନ ଅକସ୍ମାତ ଭୂପୃଷ୍ଠ ପଡ଼ିବ । ସେତେବେଳେ ?

ଝିଅଟି ଅନେକ ସମୟ ଧରି ଚାହିଁ ରହିଥିଲା ଯୁବକଟି ଆଡ଼େ । ତା'ପରେ ପଚାରିଲା—ଚିନ୍ତା କମ୍ ହେଉଛି ?

—ଉଁ ? କାହିଁ ନାହିଁ ତ !

—ପିଇଲନି ଯେ, ରଖିଦେଲ ?

ଯୁବକଟି ହସି ଦେଇ କପଟି ଉଠେଇ ନଇ ନଇ କହିଲା—ସରୁଥିଲା !

—କ'ଣ ?

ଯୁବକଟି ମୁହଁ ଉଠାଇ, ଝିଅଟିର ଆଖି ଉପରେ ଆଖି ରଖି କହିଲା—ତୋ' କଥା ।

ଈଷତ୍ ଲଜେଇ ଯାଇ ଝିଅଟି ମୁହଁ ତଳକୁ ପୋତିଦେଲା । କିଛି କହିଲାନି ।

ଲ୍ୟାମ୍ପର ନାଲିଆ ଆଲୁଅ ତିର୍ଯ୍ୟକ୍ ଭାବେ ଝିଅଟିର ଶ୍ରାନ୍ତ ଗାଲ ଉପରେ ପଡ଼ିଥାଏ । ଯୁବକଟିର ଇଚ୍ଛା ହେଲା ଗାଲର ସେଇ ପାଟଳ ଅଂଶରେ ହାଲ୍କା ଚୁମ୍ବାଟେ ଦେବା ପାଇଁ । କିନ୍ତୁ ହଠାତ୍ ତା' ପାଟିରୁ ବାହାରି ପଡ଼ିଲା—ମୁଁ କାଲି ଭେଲୋର ଯାଉଛି ।

ଝିଅଟି ମୁହଁ ଉଠାଇଲା—କାହିଁ ?

ଆଉ କୌଣସି ଉପାୟ ନ ଦେଖି ଯୁବକଟି କହିଲା—କାମ ଅଛି ।

—କେବେ ଆସିବ ?

—ଠିକ୍ ନାହିଁ ।

—ଏ କେତେ ଦିନ କୁଆଡ଼େ ଯାଇଥିଲ ?

—ନା, ଏଇଠି ଥିଲି ।

—ଆସୁ ନ ଥିଲ ଯେ ?

—ଟିକଏ ବ୍ୟସ୍ତ ଥିଲି ।

—ଭେଲୋର କାହିଁକି ଯିବ ?

ଯୁବକଟି ମୁହୂର୍ତ୍ତେ ଇତସ୍ତତଃ ହେଲା—କାମ ଅଛି ।

—କି କାମ ?

—ଅଛି ।

—କହିବନି ?

—ନା ।

—କାହିଁ ?

—ଏଇମିତି ?

—କେବେ ଆସିବ ?

ଯୁବକଟି ଚୁପ୍ ହୋଇଗଲା । ମୁହୂର୍ତ୍ତିକ ପାଇଁ ଦ୍ୱିଧାବୋଧ କଲା । ତା’ ପରେ ଝିଅଟି ମୁହଁ ଆଡ଼େ ଚାହିଁ କହିଲା—କିଛି ଠିକ୍ ନାହିଁ ।

ଝିଅଟି କିଛି ନ ବୁଝି ପାରି ଯୁବକଟି ମୁହଁକୁ ଚାହିଁଲା, ଅର୍ଦ୍ଧଦଗ୍ଧ ଆଖିରେ । ବିସ୍ମୟ, ଭୟ, ଓ ଅପାର ଏକ ଅଜଣା ଆତଙ୍କରେ ଆଖି ଦି’ଟା ତା’ର ବଡ଼ ହୋଇ ଯାଇଥିଲା । ତା’ପରେ ଧୀରେ ଧୀରେ ଝିଅଟିର ମୁହଁରୁ ଭୟ, ଆତଙ୍କ, ବିସ୍ମୟ— ସମସ୍ତ ଅନୁଭୂତିର ଚିହ୍ନ ପୋଛି ହୋଇ ଯାଇ କ୍ରମେ କ୍ରମେ ସାଦା ହୋଇ ଉଠିବାକୁ ଲାଗିଲା ! ତା’ର ସମଗ୍ର ଶରୀର ଯେପରି ଧୀରେ ଧୀରେ ନିରକ୍ତ ହୋଇ ଯାଉଥିଲା ।

ଲ୍ୟାମ୍ପର ଶିଖାରୁ ଧୂମ ବାହାରି କାଚ ଚିମନିପଟେ ଏକ ପତଳା କଳା ଆବରଣ ପଡ଼ି ଯାଇଥାଏ । ସେଥିରୁ ଏକ ଆବଛା ଧୂମିତ ଆଲୋକ ବାହାରି ସମଗ୍ର କୋଠରୀଟିକୁ ଏକ ଭୌତିକ ଛାୟା ପରି ଘେରି ରହିଥାଏ ।

କୋଠରୀଟିର ବେଦନାଦାୟକ ନୀରବତା ସହିତ ଝିଅଟିର ଅସହାୟ ଭାବେ ଫିକା ପଡ଼ିଯାଇଥିବା ଚେହେରାରେ ଯୁବକଟି ମନେ ମନେ ଅସ୍ୱସ୍ତି ବୋଧ କରିବାକୁ ଲାଗିଲା ।

ଅନେକ ସମୟ ପରେ ଝିଅଟି ପୁଣି ଥରେ ପ୍ରଶ୍ନ କଲା—ଭେଲୋର କାହିଁ ଯିବ ? କଣ୍ଠଟା ତା’ର ଅଜାଣତରେ ଥରି ଉଠିଲା । ଅସ୍ୱାଭାବିକ ଆଶଙ୍କାରେ ଝିଅମାନଙ୍କ କଣ୍ଠସ୍ୱର ଯେପରି ଥରି ଉଠେ, ସେହିପରି ।

ଯୁବକଟି ମୁହଁ ଉଠାଇଲା, ଚାହିଁଲା । ସ୍ଥିର ଭାବେ, ଏବଂ ତା’ପରେ ହଠାତ୍ ହୋ ହୋ ହୋଇ ହସି ଉଠିଲା—ମୁଁ ଜାଣିଛି ତୁ ଡରିଯିବୁ । ସେଇଥି ପାଇଁ ତ ଏଇମିତି ମଜା କରୁଥିଲି । ଭୟ ନାହିଁ, ମୋ’ର ଜଣେ ବନ୍ଧୁକୁ ନେଇ ଯାଉଛି ତା’ର କ୍ୟାନ୍ସର୍ ଅପରେସନ୍ ପାଇଁ ।

ୱି ଅଟି ଆଶ୍ୱସ୍ତ ହେଲପରି ଏକ ଗଭୀର ନିଃଶ୍ୱାସ ଗ୍ରହଣ କଲା, କପାଳରୁ ଅଡ଼ୁଆ କେଶ ସଜାଡ଼ି ସଜାଡ଼ି କହିଲା—ଯେଉ । ଏମିତି ଥଟ୍ଟା କରିବନି ଆଉ, ମୁଁ ଭାବିଲି ତମର କିଛୁ....

ହଠାତ୍ ୱିଣ୍ଡୋ କଣା ବାଟେ ଭିଜା ପବନ ଦମ୍କାଏ ବୋହି ଆସିଲା । ଲ୍ୟାମ୍ପ୍ ର କ୍ଷୀଣ ଶିଖା ହଲ୍‌ଚଲ ହେଇଗଲା । ଏବଂ ଯୁବକଟିର ମୁହଁରେ ଯେଉଁ ଆତ୍ମ ପ୍ରବଞ୍ଚନାର ଛାୟା ଖେଳିଗଲା ୱି ଅଟି ତାହା ଲକ୍ଷ୍ୟ କରି ପାରିଲା ନାହିଁ ।

ସେଇ ଛାୟା ଅନ୍ଧାର ଭିତରୁ ଯୁବକଟି ଲକ୍ଷ୍ୟ କଲା ୱି ଅଟିର ଶ୍ରାନ୍ତ ମୁହଁରେ ଏକ ସ୍ନିଗ୍ଧତାର ଅଶ୍ରୁସିକ୍ତ ପ୍ରଲେପ । ଟେବୁଲ ଉପରେ ନଖରେ ଗାର କାଟି କାଟି ୱି ଅଟି ମୁଣ୍ଡ ହଲେଇ, ଈଷତ୍ ଆଦେଶ ଦେବା ଭଙ୍ଗୀରେ କହିଲା— ଆଉ କେବେ ଏମିତି ମଜା କରିବନି ।

ଯୁବକଟି କିଛି କହିଲାନି । ଚୁପ୍ ରହିଲା ।

( ୧୯୭୬ )

# ଜମି ଉପରେ ଶାଗୁଣା

ନବଘନ ବାବୁଙ୍କର ମନେ ଅଛି ଚାକିରି ଖଣ୍ଡେ ପାଇ ସେ ପହିଲେ ଯେଉଁ ଦିନ ଗାଁ ଛାଡ଼ି ସହରକୁ ଚାଲି ଆସିଲେ ତାଙ୍କ ନବବିବାହିତା ପତ୍ନୀ ନିରୂପମା ସେ-ଦିନ ଅଲତା ରଙ୍ଗର ମୋଟା ଧଡ଼ିଥିବା ଗୋଟିଏ ଧଳା ଶାଢ଼ୀ ପିନ୍ଧିଥିଲେ । ତେଲ ସରସର ମୁଣ୍ଡ ବାଳରେ ଗୋଟିଏ ଜୁଡ଼ା ବାନ୍ଧିଥିଲେ । ଜୁଡ଼ାରେ ମହାଦେବଙ୍କ ହତାରୁ ତୋଳି ଆଣିଥିବା ତିନୋଟି କନିଅର ଫୁଲ ଖୋସିଥିଲେ । ମୁଣ୍ଡ ଉପରକୁ ଓସାରିଆ ଓଢ଼ଣା ଟାଣି ଗାଁ ବୃନ୍ଦାବତୀ ଚଉରାରେ ଅଣ୍ଟୁ ମାଡ଼ି ପ୍ରଣାମ କରି ସାରି, ଲୁଗା କାନି ଗଣ୍ଠି ଫିଟେଇ ଖିଲିପାନ ଗୋଟିଏ ଗାଲ ଭିତରକୁ ଠେଲି ଦେଇ, ଦାଣ୍ଡ ଦୁଆରେ ଟ୍ରଙ୍କ୍, ବେଡିଂ, ଚାଉଳ ବସ୍ତା, ଚୂଡ଼ା ବାଉଁଶିଆ, ଗୁଡ଼ହାଣ୍ଡି ଓ ଘିଅ ଛେଲି ନଡ଼ିଆରେ ବୋଝେଇ ହୋଇଥିବା ଶଗଡ଼ରେ ବସୁ ବସୁ ହଠାତ୍ ଥମକି ଛିଡ଼ା ହେଇପଡ଼ି କହିଲେ—"ଦେଖ ଲୋ ମା', ମଧୁସାଉ ଦୋକାନରୁ ଚୁଆ ମିଶେଇ କାଲି ଦି' ପହରଯାକ ବସି ବସି ଗୁନ୍ଥି ଥିଆଣିଲି ନେଇଯିବ ବୋଲି, ଏ ନିଆଁ ଲଗା ମନର କ'ଣ ଆଉ ସେ ହେଜ ଅଛି ?"

ନବଘନ ବାବୁ ବେଳେ ବେଳେ ସେହି ଦୃଶ୍ୟଟି ମନକୁ ଆଣନ୍ତି । ଗାଁ ଛାଡ଼ିବା ପରେ ବହୁତ ଗୁଡ଼ିଏ ବର୍ଷ ବିତିଗଲାଣି ! ପହିଲେ ପହିଲେ କେତେବର୍ଷ ଛଦବା କେବେ ସେ ଯାଉଥିଲେ । ନଙ୍ଗଳା ପାଦ ଦି'ଟାକୁ ତାଙ୍କର ଗାଁ ମାଟି ଉପରେ ବୁଲବୁଲ କରେଇ ଆଣୁଥିଲେ । ତା'ପରେ ଆଉ କି ବର୍ଷ ଯାଇ ପାରି-ଲେନି । ଛୁଟି ମିଳେନି, ପିଲାଙ୍କ ଇସ୍କୁଲ, କଲେଜ୍, ଘର କାମ ଇତ୍ୟାଦି ହଜାରେ ଝମେଲା ଭିତରେ ଛନ୍ଦି ହୋଇ ରହିଗଲେ ।

ସ୍ମୃତି ଭିତରେ ଏବେ ବେଳେ ବେଳେ ନବଘନ ବାବୁଙ୍କୁ ଆଉ ଗୋଟିଏ ଦୃଶ୍ୟ ଘାରେ । ଏ ଦୃଶ୍ୟଟି ମଧ୍ୟ ପୂର୍ବବତ୍ ତାଙ୍କ ପତ୍ନୀ ନିରୂପମାଙ୍କ ସର୍ଜନା । ନବଘନ ବାବୁ ପ୍ରଥମେ ରହୁଥିଲେ ଟାଇପ୍ ଫୋର୍ କ୍ୱାର୍ଟର୍‌ରେ । ତା'ପରେ ପ୍ରମୋ-ଶନ ପାଇ ଟାଇପ୍ ଫାଇଭ୍ କ୍ୱାର୍ଟରକୁ ଆସିଲେ । କ୍ୱାର୍ଟର ଆଗରେ ତାର ବାଡ଼ ଘେରା ଖୋଲା ଜମି ଛନ୍ଥୁଆଏ । ଦିନେ ଅଫିସ ଫେରନ୍ତା ସନ୍ଧ୍ୟାରେ ନବଘନ ବାବୁ ବାରଣ୍ଡାରେ ବସି ବସି ଚା' ପିଉଥାନ୍ତି । ତାଙ୍କ ପତ୍ନୀ ନିରୂପମା ଗାଲରେ ପାନ ଖିଲେ ଗୁଞ୍ଜି କହିଲେ—"ହଇଓ ଦି'ଟା ନଡ଼ିଆ ଚାରା ଆଣି ଲଗେଇଲେ ହ'ନ୍ତାନି ?" ନବଘନ ବାବୁ ସମ୍ମତ ଭାବେ ହସିଲେ ଓ ପତ୍ନୀଙ୍କୁ କହିଲେ ଯେ ନଡ଼ିଆ ଚାରା ଲଗେଇଲେ ଗଛ ଦିନେ ବଡ଼ ହେବ, ଆଉ ନଡ଼ିଆ ନି' ଫଳିବ । ନିର୍ଦ୍ଧାର୍ଯ୍ୟ କଥା । ପ୍ରକୃତିର ନିୟମ ଇଏ । ହେଲେ ସେ ସବୁ ତାଙ୍କ ଭୋଗରେ ଲାଗିବନି । ଭୂତ ଖାଇବେ ।

ତତ୍‌ପରେ ପତ୍ନୀ ନିରୂପମା ଯେଉଁ ପରାମର୍ଶ ଦେଲେ ନବଘନ ବାବୁ ସେଥିରେ ଚମତ୍କୃତ ହେଲେ । ତାଙ୍କ ଆଖିରେ ବିମୁଗ୍ଧ ଭାବ ଖେଳିଗଲା । ସେ ତାଙ୍କ ପତ୍ନୀ ନିରୂପମାଙ୍କ ମୁଣ୍ଡକୁ ଚାହିଁଲେ—ତେଲ-ସରସର ଅଳିଆ ବାଳ ଗୋଛାଏ, କପାଳ ପାଖ ଟାଙ୍ଗା ହୋଇ ଆସୁଛି—ତଥାପି ନବଘନବାବୁ ନ ଭାବି ରହି ପାରିଲେନି ଯେ ତାଙ୍କ ପତ୍ନୀ ନିରୂପମାଙ୍କ ମୁଣ୍ଡରେ କିବା ପରି ପ୍ରଚୁର କଳ୍ପନା ଶକ୍ତି ଅଛି । ନବଘନ ବାବୁଙ୍କୁ ଲାଗିଲା—ପତ୍ନୀ ନିରୂପମା ତାଙ୍କୁ ପରାମର୍ଶ ଦେଲେ ନାହିଁ, ଗୋଟିଏ ଛବି ଆଙ୍କିଲେ—ସହରର କ୍ୟାନ୍‌ଭାସ୍ ଉପରେ ଗାଢ ରଙ୍ଗ ବୋଳି ଅନୁପମ ଛବିଟିଏ : ସହରର ଯେଉଁଠି ସଡ଼କ ଯାଇଛି, ଟେଲିଫୋନ ଲାଇନ୍ କରେ, ସରକାର ଜମି ଦେଉଛନ୍ତି ...ଲିଜ୍‌ରେ । ପାଖେ ଆମ୍ବତୋଟା, ପାଖେ ମହାଦେବ, ମନ୍ଦିର ତୋଳା ହେଉନି, ହବାର ସମ୍ଭାବନା ଅଛି । ଜନବସତି ଘନ ହେବନି ଆଦୌ, ପ୍ଲାନ୍‌ରେ ଜମି ଦିଆ ହେଉଛି, କୋଳାହଳ ବି' ନାହିଁ । ସେଇଠି ଜମିଖଣ୍ଡେ କିଣି ଘର ବନେଇ ହେବ । ଆବୁରୁ କାବୁରୁ ଘର ନୁହେଁ, ମସା ଚୂନା ହୋଇ ସମତା ରଖି ତୋଳା ହବ । ଘର ଚାରିପାଖେ ନଡ଼ିଆ ଗଛ ଲାଗିବ, ମେଡ଼ିଆ ଡେଙ୍ଗା ନଡ଼ିଆ ଗଛ ନୁହେଁ, ଫାର୍ମ୍‌ରୁ କେରଳ ଗଛ ଆଣି ଲଗାଯିବ, ଅଳ୍ପ ଗଛ, ବାରବର୍ଷରେ ଫଳିବ । ଏଇ ସବୁ ମଝିରେ ଧୋବ, ସମ୍ପନ୍ନ ଓ ପରିଚ୍ଛନ୍ନ ଘରଟିଏ ।

ନବଘନବାବୁ ଭାବିଲେ—ମନ୍ଦ କ'ଣ ?

ଭାବିବା ସାଙ୍ଗେ ସାଙ୍ଗେ ଲୋନ୍ ଆଣି ଜମି କିଣିଲେ । ଲୋନ୍ ଟଙ୍କା ଆଣିବା ପାଇଁ ନବଘନ ବାବୁଙ୍କୁ ହାଲିକାଲି ହେବାକୁ ପଡ଼ିଲା । ନବଘନ ବାବୁ ବିଚଳିତ ହେଲେ ନାହିଁ । ପତ୍ନୀ ନିରୂପମା ଯେଉଁ ଛବିଟି ସେଦିନ ଆଙ୍କିଥିଲେ, ନବଘନ ବାବୁ ଆଖି ବୁଜି ସେଇ ଛବିଟି କଳ୍ପନା କରନ୍ତି । ସବୁ ହାଲ ଶୁଖିଯାଏ ।

ମାତ୍ର କିଛି ଦିନ ଉତ୍ତାରେ ନବଘନ ବାବୁ ଭାବିଚିନ୍ତି ଦେଖିଲେ ଯେ ଘର ବନେଇବା ପାଇଁ ତାଙ୍କ ହାତରେ ଆଉ ଟଙ୍କା ନାହିଁ । ପ୍ରଭିଡେଣ୍ଟ ଫଣ୍ଡ, ଏଲ୍. ଆଇ. ସି. ଆଦି ବାବଦରେ ଯାହା ମିଳିବ ସେଥିରେ ହାତ ଦେବା ନିର୍ବୁଦ୍ଧିତା । ଝିଅ ବାହାଘର ଅଛି । ବଡ଼ଟି ପାଇଁ ବିଶେଷ ଚିନ୍ତା ନାହିଁ—ସେ ସୁନ୍ଦରୀ ଓ ଡାକ୍ତରୀ ପଢ଼ୁଛି । ସାନଟି ପାଇଁ ତାଙ୍କୁ ବାରମ୍ବାର ଶୁଣ୍ଢିପିଣ୍ଡା ହେବାକୁ ପଡ଼ିବ—ଏହା ଭାବି ନବଘନ ବାବୁ ବେଳେ ବେଳେ ଜୀବନ ପ୍ରତି ବିତସ୍ପୃହ ହୋଇ ପଡ଼ନ୍ତି । କାଳୀ, ମୋଟି ଓ ହୁଣ୍ଡି—କିଏ ତାଙ୍କୁ ବାହା ହେବ ? ନବଘନବାବୁ ଆଶ୍ଚର୍ଯ୍ୟ ହୁଅନ୍ତି ଯେ ପତ୍ନୀ ନିରୂପମା ଏ ବିଷୟରେ ଆଦୌ ଉଦ୍‌ବିଗ୍ନ ନୁହନ୍ତି । ଅଥଚ ହ'

ଥର ଯେ ପ୍ରସଙ୍ଗ କ୍ରମେ କଥାଟି ଉଠେଇଲାରୁ ପତ୍ନୀ ନିରୂପମା ଗାଲରେ ପାନଖିଲେ ଗୁଞ୍ଜି ଓଠକୁ ରଙ୍ଗକରି ମୁରୁକି ହସଟିଏ ଦେଇ କହିଲେ—"ହଁ ମ, ଏଥକୁ ଏତେ ଚିନ୍ତା କଆଁ ? ସେ ତା'ର ବାହୁ ନବ ନାହିଁ ? ମୁଁ ଦେଖୁଛି ମ, ପୁଅକୁ ସବୁ ନାକରେ ଦୌଡ଼ି ଦେଇ ଘୋଷାରିଲା ବାଲା ସେ।" ନବଘନ ବାବୁ ସାମାନ୍ୟ କୁଛୁ କୁଛୁ ହୁଅନ୍ତେ ପତ୍ନୀ ନିରୂପମା ସାହି ପଡ଼ିଶା, ଜଣା ଅଜଣା ନାନା ପରିବାରର କେତୋଟି ଚମକପ୍ରଦ ଉଦାହରଣ ଗୋଟି ଗୋଟି କରି ବଖାଣିଗଲେ । ନବଘନ ବାବୁ ଆଦ୍ୟନ୍ତ ସବୁ ଶୁଣିଲେ, ହାଇ ମାରିଲେ, ତା'ପରେ 'ନନ୍ଦ ମାଡ଼ିଲାଣି" କହି ଶୋଇ ଶୋଇ ଭାବିଲେ-ମନ୍ଦ କ'ଣ ? ଯେତେବେଳେ ଯାହା । ଯେମିତି ଦେଉଁକୁ ସେମିତି ପୂଜା । ବର୍ଷା ହେଲେ ଛତା ଖଣ୍ଡି ଦେଖେଇବାକୁ ପଡ଼ିବ । ବର୍ଷା ମୁଆଡ଼ିକି ହେଉ, ତାହାର କ'ଣ ଯାଏ ? ଆପଣାକୁ ସମ୍ଭାଳିବା କଥା । ଖାଲି ଯାହା ଡର ଟିକିଏ ଥାଏ-କାଳେ ଅଘଟଣା କିଛି ଘଟିଯିବ ? ହେଲେ ବ' କୋଉ ଏମିତି ପୃଥିବୀ ଲେଉଟି ଯିବ କି ? ଆଜିକାଲି କ'ଣ ଡାକ୍ତରଙ୍କ ଅଭାବ ? ସେ ସବୁ ଡାକ୍ତରଙ୍କ ଧନ ଦୌଲତ ଗୁଡ଼ାଏ ହେଇ ଗଲାଣି ? ଝିଅ ତା' ମାମୁଁ ଘର କି ମାଉସୀ ଘର ଯାଇଛି କହି କ'ଣ କେତୃଟା ଦିନ ଘର ଭିତରେ ଲୁଚେଇ ହେବନି ? ଲୋକେ ଜାଣିଲେ ସିନା ବଂଶ ମର୍ଯ୍ୟାଦା କଥା ଉଠିବ ।

ତଥାପି ନବଘନ ବାବୁଙ୍କ ମନଭିତରଟା ଖେଞ୍ଚି ହେଲା ପରି ଲାଗିଲା । ଭାବି ଭାବି ତାଙ୍କ କପାଳର ଶିରା ସବୁ ଗରମ ହୋଇ ଗଲା । ଟାଏଁ ଟାଏଁ ବାଧିବାକୁ ଲାଗିଲା । ଅବଶେଷରେ ନବଘନ ବାବୁ ନିଜ ସହିତ ଗୋଟିଏ ସାଲିସ୍ କଲେଯେ ସେ ଲଗାମ୍ ଢିଲା କରିଦେବେ ଓ ମଝିରେ ମଝିରେ ଝିଅ କାନ ପାଖରେ ବଂଶ ମର୍ଯ୍ୟାଦା କଥା ସ୍ମରଣ କରାଇ ଦେବେ । ତା'ହେଲେ କଥାଟା ଦି ଆଡ଼କୁ ପାଇବ ।

ନବଘନ ବାବୁ ତାଙ୍କ ପତ୍ନୀ ନିରୂପମାଙ୍କ ବୁଦ୍ଧିକୁ ପୁଣି ଥରେ ପ୍ରଶଂସା କଲେ ଓ ପୁନଃଶ୍ଚ ଘର ବନେଇବା ଟଙ୍କା ବାବଦରେ ତାଙ୍କର ପରାମର୍ଶ ଲୋଡ଼ିଲେ । ଏବଂ ପରବର୍ତ୍ତୀ କେତୋଟି ମାସ ତାଙ୍କର ସହକର୍ମୀ ଓ କେତେଜଣ ଘନିଷ୍ଠ ବନ୍ଧୁମାନଙ୍କ ସହିତ ପତ୍ନୀଦତ୍ତ ପରାମର୍ଶ ବିଷୟରେ ଚର୍ଚ୍ଚା କଲେ । ଅବଶ୍ୟ ସେମାନଙ୍କ ନିକଟରେ ଏହା ପତ୍ନୀଙ୍କ ପରାମର୍ଶ ବୋଲି ରହସ୍ୟ ରଖିଲେ ।

କାରଣ ଜୀବନରେ ଏହି ପ୍ରଥମ ଥର ନବଘନ ବାବୁ ଆବିଷ୍କାର କଲେ ଯେ ସେ ସ୍ତ୍ରୀ ବୁଦ୍ଧିରେ ଚାଲିଛନ୍ତି । ଘର ତୋଳିବା ଟଙ୍କା ଯୋଗାଡ଼ କରିବା ପାଇଁ ପତ୍ନୀ ନିରୂପମାଙ୍କ ପରାମର୍ଶ ଶୁଣିବା ଉତ୍ତାରେ ନବଘନବାବୁ କିଛି ସମୟ ନିର୍ବୋଲାରେ

ଭୁନଭାନ ବସି ରହିଲେ. ଆଖି ବୁଜିଲେ ଓ ଗାଁ ଛାଡ଼ି ଆସିବାର ସେଇ ପହିଲି ଦିନଟିର ଦୃଶ୍ୟ ମନକୁ ଆସିଲେ । ନବଘନ ବାବୁଙ୍କୁ ଲାଗିଲା ଯେ—ସେ ଦୃଶ୍ୟଟି ଧୀରେ ଧୀରେ ମ୍ଳାନ ହୋଇ ଆସୁଛି, କେତେ ଦିନେ ପୂରାପୂରି ପୋଛି ହୋଇଯିବ ବୋଧହୁଏ, ତା'ପରେ ଆଖି ବୁଜିଲେ ଯେ ସେହି ଦୃଶ୍ୟଟି ପରିବର୍ତ୍ତେ ହଠାତ୍ ଗୁଡ଼ାଏ ବିକଳ ଶୂନ୍ୟତାର ଚେଲାଚେପଲା ଦେଖିବେ ଯେପରି, ଆଉ କିଛି ନ ଥିବ ସେଠି । କ'ଣ ହୋଇଯିବ ସେଠୁ ? ନବଘନ ବାବୁ ଭାବିଲେ—କିଛି ହେବ ନାହିଁ ସତ, ହେଲେ ଦିନେ ଯଦି କେବେ ତାଙ୍କ ଘରଟି ପୂରାପୂରି ନିଗୁଟିଆ ହୋଇଯିବ ତ ତାଙ୍କୁ ଝିଅଙ୍କ ପରି କାନ୍ଦିବାକୁ ଇଚ୍ଛା ହେବ ସେଦିନ, କିମ୍ବା କିଏ ଜାଣେ, ହୁଏତ ତକିଆରେ ମୁହଁ ଗୁଞ୍ଜି ଗୁଡ଼ାଏ କାନ୍ଦି ପକାଇବେ ସେ ।

ସେଇ ଆଶଙ୍କାରେ ନବଘନବାବୁ ତାଙ୍କ ସହକର୍ମୀ ଓ ବନ୍ଧୁମାନଙ୍କ ସହ ଏ ବିଷୟରେ ବହୁତ ଚର୍ଚ୍ଚାଲୋଚନା କଲେ । ସେମାନେ ମଧ୍ୟ ସମସ୍ତେ ତାଙ୍କ ପତ୍ନୀ ନିରୂପମାଙ୍କ ପରାମର୍ଶ ସହିତ ଏକମତ ହେଲେ ଯେ ଦେଶର ଏବେ ଯୋଉ ପରିସ୍ଥିତି, ଗାଁରେ ଜମି କେତେମାଣ ଥିବା ମାନେ ଲାଭ ଘର ତ ଶୂନ୍, ଓଲଟି ତମକୁ ହାତ ପୋଛିବାପରି ଲାଗିବ । ଫି ସନ ଧୋଇ ନଇଲେ ବାତ୍ୟା—ଇଏ ତ ଧରାବନ୍ଧା କଥା ।

ନବଘନ ବାବୁ ନିଜେ ମଧ୍ୟ ଖାତାପତ୍ର ଦେଖିଲେ ସେମାନେ ଯାହା କହୁ-ଛନ୍ତି ଉଚିତ କଥା । ଗଲାବର୍ଷ ବାପା ଲେଖିଥିଲେ' 'ଏଥର ଧାନଗଛ ଛନ ଛନ ହୋଇ ବଢ଼ୁଛି । ଫସଲ ଭଲ ହେବ । ଟଙ୍କା ଦି'ଶ ଖଣ୍ଡେ ଏଣାଦନୁଁ ଯୋଗାଡ଼ କରିଥିଲେ ଫସଲ ଅମଳ ବେଳସିକା ମୂଲିଆ ଖର୍ଚ୍ଚ ଲାଗିବ ।' ଧାନ ଅମଳର ମାସକ ଥାଏ । ବାତ୍ୟା ହେଲା, ସବୁ ହଜିଗଲା । ଓଲଟି ନବଘନ ବାବୁଙ୍କୁ ଧାର ଉଧାର କରି ଏଠୁ ଧାନ କିଣି ଘରକୁ ପଠାଇବାକୁ ପଡ଼ିଲା ।

ନବଘନବାବୁ ପତ୍ନୀ ନିରୂପମାଙ୍କ ବୁଦ୍ଧିକୁ ଆଉ ଏକବାରେ ତାଚ୍ଛଲ୍ୟ ନ କରି ରହି ପାରିଲେ ନାହିଁ । ଖାସା ବୁଦ୍ଧି ଏକା—"ଗାଁରେ ଯେଉଁ ଜମିତକ ଅଛି, ବିକି ଦିଅ । ସେଇ ଟଙ୍କାରେ ଏଠି ଘର କର । ଲମ୍ବେଇ କରି ଦି' ମହଲା ଘରଟେ କରିବ ଯେ ଅଧକେ ଆମେ ରହିବା, ଆଉ ଅଧକ ଭଡ଼ା ଦେବା-ଦି'ଶ ଖଣ୍ଡେ ତ ମାସକୁ ମାସ ପାଇବା । ଆଉ ବାକି ଟଙ୍କାରେ ବଡ ଝିଅ ପାଇଁ ଗୋଟାଏ କ୍ଲିନିକ୍ ଖୋଲିଦେବ, ଆଉ ଯାହା ରହିବ । ସାନ ପୁଅଟି ତ ପାଠ ଶାଠ ଛାଡ଼ି କ'ଣ ଯୁବବାହିନୀ ଗଢ଼ିଲାଣି—ଏ ନିଆଁଲଗା ନେତା ଗୁଡାକ କ'ଣ କଅଣି କି ? ଛାଡ଼, ସେମାନେ ଚୁଲିକୁ ଯା'ନ୍ତୁ କି ପାଉଁଶକୁ ଯା'ନ୍ତୁ, ମୋ' ପୁଅକୁ ସେଠୁ ଓଟାରି ଆଣି ବ୍ୟବସାୟରେ ଲଗେଇ ଦିଅ । କହନ୍ତି ନାହିଁ—ବାଣିଜ୍ୟେ ବସତି ଲକ୍ଷ୍ମୀ ।"

ଅଗତ୍ୟା ଦିନେ ସକାଳୁ ଧୋତି, ପଞ୍ଜାବୀ, ଚପଲ ପିନ୍ଧି, ଧୋତି କୁଞ୍ଚ ପଞ୍ଜାବୀ ପକେଟରେ ପୂରେଇ ନବଘନ ବାବୂ ତାଙ୍କର ଗ୍ରାମାଭିମୁଖୀ ବସ୍‌ରେ ଚଢ଼ିଲେ ।

( ୨ )

ବସ୍‌ରୁ ଓହ୍ଲେଇ ନବଘନ ବାବୂ ଠିଆ ହୋଇ ରହିଲେ । ସାମ୍‌ନାରେ ନାଲିମାଟି ରାସ୍ତା—ତାଙ୍କର ଗାଁକୁ ଯାଇଛି ? ନ ଥିଲା ତ ? କେବେ ହେଲା ? ସେ ତ ହେ-ଇ ସେ ହୁଡ଼େ ହୁଡ଼େ ଯାଉଥିଲେ ।

ନବଘନବାବୁ ତାଙ୍କ ଚାରିପାଖେ ଥରେ ଆଖି ବୁଲେଇ ଆଣିଲେ—ସେଇ ଲିଆଁସି, କିଆ ବଣ, ଭୂତିଆ ବରଗଛ, ହରି ସାହୁ ଦୋକାନ—ସବୁ ଚିହ୍ନା ଜଣା ଲାଗୁଛି । କିନ୍ତୁ କାହିଁ ? ତାହା ପାଖରେ ସଢ଼ଙ୍କୋଳି ନେଲୁ ଥିବା ଘର ନାହିଁ ତ ?

ନବଘନ ବାବୁ ବିମର୍ଷ ବଦନରେ ହୁଡ଼ି ଆଡ଼କୁ ଆଗେଇଲେ । ହରିସାହୁ ଦୋକାନ କଡ଼ ଦେଇ ଯାଉ ଯାଉ ଭାବିଲେ ଥରେ ଭାଟିବାଡ଼ ମଧ୍ୟ ବାଟେ ବୁଲିଯିବେ, ହରିସାହୁ ଥିବ ତ ପଚାରିବେ—"ହରିଆଜା, ପକଉଡ଼ି ଗରମ ଅଛି ?"

ହଠାତ୍ ଏଇ ସମୟରେ କଣିଆ ଖଣ୍ଡେ ପିନ୍ଧି, କାନ୍ଧରେ ଗାମୁଛାଟା ପକେଇ କଳା ମୁଚ୍ ମୁଚ୍ ବୁଢ଼ାଟିଏ ପାଣି ଗିଲାସେ ହାତରେ କୁଳୁକୁଞ୍ଚା କରିବା ପାଇଁ ମୁହଁ ବୁଲେଇଲା ବେଳକୁ ନବଘନ ବାବୁଙ୍କ ଉପରେ ଦୃଷ୍ଟି ପଡ଼ିଗଲା । ବୁଢ଼ାଟି ଠିଆ ହୋଇ ପଡ଼ି ନବଘନ ବାବୁଙ୍କୁ ନିରୀକ୍ଷଣ କଲା ପରେ ସହସା ଖୁସିରେ ଉଚ୍ଛୁଳି ଉଠିଲା ଯେପରି—"ସେ ଅପୂର୍ବ ! ଆମ ସାଆନ୍ତେ । ହଇଓ ମହାଜନେ, ଆସବା, ଦେଖ ଦେଖ କିଏ ଆଇଛନ୍ତି ! ଦଣ୍ଡବତ ସାଆନ୍ତେ ଦଣ୍ଡବତ ! ଆମ ଲକ୍ଷ୍ମୀ ସାଆନ୍ତାଣୀ ଆଇଛନ୍ତି ? ସେ ସାଆନ୍ତେ ବାଣ୍ଡିଆ ଖଣ୍ଡେ ଦେଇଥିଲେ ମୋ ଶଗଡ଼ଟା ଘିଚି ଆସି ନ ଥାନ୍ତା ? ହଇଓ ମହାଜନେ, ଆଏ ପେଣ୍ଡାଲ ଟି' ବସାବା । ବସିବା ହୁଅନ୍ତୁ ସାଆନ୍ତେ । ବସିବା ହୁଅନ୍ତୁ—ହୋ-ଓ ମୁଦୁଲିଏ । ଆଉ ଯାଉଛ କୁଆଡ଼େ ବା ? ଆସ ଆସ, ଦେଖ କିଏ ଆଇଛନ୍ତି । ଆମ ସାଆନ୍ତେ ବା, ସାଆନ୍ତେ । —

ନବଘନ ବାବୂ ଗରମ ଗରମ ପକଉଡ଼ି ଖାଇଲେ, ଅଜାଣତରେ ପକଉଡ଼ିରେ ଥିବା କଞ୍ଚା ଲଙ୍କା ଚୋବେଇ ଦେଇ 'ଉଃହା' ହେଲେ, ହରିସାହୁ ତରତର କରି ବାସି ଲଡୁ ଗୋଟାଏ ପତରେ ଆଣି ରଖିଲା, ତାକୁ ଖାଇଲେ, ତା'ପରେ ବାମ୍ବୁଆ ଟି' ପିଉ ପିଉ ଘର କଥା, ଗାଁ ହାଲ୍‌ଚାଲ, ମେଳଣ କଜିଆ କଥା ସବୁ ପଚାରି ବୁଝିଲେ । ନବଘନ ବାବୁ ଆଶ୍ଚର୍ଯ୍ୟ ହେଲେ ଯେ ଏତେ ସବୁ ବିଷୟରେ କଥା-ଭାଷା କରି ପାରିବେ ବୋଲି ସେ ଆଗରୁ କେବେ ଭାବି ନ ଥିଲେ । ତାଙ୍କ କଣ୍ଠରେ

କଥାଗୁଡ଼ିକ କଏ ଯେପରି ଆପେ ଆପେ ଆସି ଖଣ୍ଡି ଦେଇ ଯାଉଥାଏ । ଶେଷରେ ନବଘନ ବାବୁ ବିଷୟ ବସ୍ତୁ ଉପରକୁ ଆସିଲେ । ଫସଲ କଥା ପଚାରିବାରୁ ହରି ସାହୁ, ବକା ମୁଦୁଲି, ରଘୁ ନାହାକ, ଉପସ୍ଥିତ ସମସ୍ତେ କପାଳରେ କର ମାରିଲେ ଓ ଏ ଘୋର କଳି କାଳରେ ସେମାନେ ଯେ ସେମାନଙ୍କ ପୂର୍ବଜନ୍ମ ସୁକୃତ ଓ ଏ ଜନ୍ମର ପୁଣ୍ୟକର୍ମ, ଇତ୍ୟାଦି ଯୋଗୁଁ ଏବେ ବି ଢୋକେ ପିଇ ବଞ୍ଚି ଜୀଇଁ ରହି-ଛନ୍ତି—ଏହା ସେମାନଙ୍କ ନିକଟରେ ପରମ ଗୌରବର ବିଷୟ ବୋଲି ନବଘନ ବାବୁଙ୍କୁ ବିଶଦ ଭାବେ ବୁଝାଇ ଦେଲେ ।

ସେମାନଙ୍କ ଦୁର୍ଦ୍ଦଶାରେ ନବଘନ ବାବୁ ମନେ ମନେ ପୁଲକିତ ହେଲେ । ଯାହାହେଉ, ବାପାଙ୍କୁ ମନେଇବା ବିଶେଷ କଷ୍ଟ ହେବନି ବୋଧହୁଏ । ଉଶୁମାନ-ଆଟାରେ ବାପା କେବେ କିଛି କାନକୁ ନିଅନ୍ତିନି ।

( ୩ )

ଢନଢନ ବଢଗଲଣି ।

ଓର ଉଣ୍ଡି ବାପାଙ୍କ ମିଜାଜ୍‌ର ଗତି ପ୍ରକୃତି ପର୍ଯ୍ୟବେକ୍ଷଣ କରି କଥାଟା କହିବେ କହିବେ ହୋଇ ନବଘନ ବାବୁ ଆଉ କହି ପାରି ନାହାଁନ୍ତି । ପ୍ରଥମତଃ, ବାପାଙ୍କ ଦେଖା ମିଳିବା କଷ୍ଟ—ସରୁ କିଆରିରେ ପାଣି ମଡ଼େଇବାକୁ ଯିବେ, ଗୋରୁଙ୍କ ପାଇଁ ଘାସ କାଟି ଆଣିବେ, ଗୁହାଳ ସଫା କରିବେ, ଗୋରୁଙ୍କୁ ଆହାର ଦେବେ, ଆଉ ଅବସର ମିଳିଲେ ଗପ୍ ମୁଠାଏ ଧରି ଦାଣ୍ଡକୁ ଆସି ଡାକ ଗୁଡ଼ିବେ । 'ହୋ-ଓ ନାହାକ ପୁଅ, ଆଏ ପାଲି ପଡ଼ିବନି କି ଆଜି ?' ସୁତରାଂ, ବାପାଙ୍କ ସାଥିରେ ଥରେ ହେଲେ ମୁହାଁମୁହିଁ ବସିବାର ସୁଯୋଗଟିଏ ମଧ୍ୟ ବର୍ତ୍ତମାନ ସୁଦ୍ଧା ପାଇନାହାଁନ୍ତି । ଅଥଚ ବାପା ତାଙ୍କର ଘା'ର ଭିତରେ ନବଘନ ବାବୁଙ୍କ ହାଲଚାଲ ଟିକିନିଖି ଭାବେ ବୁଝି ସାରିଲେଣି । ନବଘନ ବାବୁ ଆଶ୍ଚର୍ଯ୍ୟ ହେଲେ—କିପରି କେତେ ସହଜ ସ୍ୱଚ୍ଛ ଭାବେ କଥାଗୁଡ଼ିକ ଆପେ ଆପେ ବୋହିଗଲା ! ବାପା ଗୋରୁଙ୍କୁ ଗାଧୋଇ ଦେଉଥିବେ କି ଗୁହାଳ ସଫା କରୁଥିବେ ଆଉ ପଚାରିବେ—"ଆଉ ଆମ ମିନି କେଉଁଟେ ହେଲାଣି ? ଏଁ ! ଡାକ୍ତରଣୀ ପଢ଼ିଲାଣି ? ହେଃ ହେଃ ହେଃ" ପାକୁଆ ପାଟିରେ ଶିଶୁଙ୍କ ପରି ଖଲ ଖଲ ହୋଇ ହସି ଉଠି କହିବେ, "ହଇଓ ଶାନ୍ତ ବୋଉ, ଆଏ, ଶୁଣିଲାଣି ? ଏ ଅ.ପ., ଆଏ ଶୁଣିଲଣି ? ସେ ଆମ ମିନି କୁଆଡ଼େ ଡାକ୍ତରଣୀ ହବ । ହେଃ ହେଃ ହେଃ, ଆରେ ବେଙ୍ଗଫେଙ୍ଗ ନାହିଁତ ଟିକି ?" ପାକୁଆ ପାଟିରେ—ହସୁ ହସୁ ଗୋବର ଟୋକେଇ ଧରି ବାପା ବାଡ଼ିଆଡ଼କୁ ଯିବେ, ଖାଲି ଟେକେଇ ଦାନ୍ତରେ ପଶୁ ପଶୁ ପୁଣି ଖିଅ ଧରିବେ—"ଆଉ ସେ ସାନୁଟା ? କେଉଁକେ ହେଲାଣି ? କେବେ ସବୁ ଆସିଥିଲେ ? ଅରେ ସେ ଢିଠିଆ ଟୁଅ ବାହାଘର ଯୋଉ ସନ ହେଲିବା, ହଁ ହଁ, ସେଇ ରଜକୁ ତ ?"

ନବଘନ ବାବୁ ଆତ୍ମମୀ ସ୍ତୁଅନ୍ତି ଓ ସ୍ତ୍ରବନ୍ତି ନିଜ କଥାଟି କେମିତି କହିବେ ଏଠି ? ନବଘନ ବାବୁଙ୍କ ଲାଗେ କଥାଟା ଏଠି ସଙ୍ଗତ ହେବନି, ବହୁତ ନିହାତି ଅଶ୍ଳୀଳ ଶୁଭିବ । ସେ ସବୁ ପ୍ରସଙ୍ଗ ପ୍ରକାଶେ ନିଆଯି ବେଳ ଅଛି । ନବଘନ ବାବୁ ସେଇ ଅପେକ୍ଷାରେ ରହିଲେ ।

ଶେଷରେ, ଆଜି ସକାଳୁ, ଦାଣ୍ଡ ଦୁଆରେ ବସି ନଡ଼ିଆ ବାଡ଼ୁଙ୍ଗାରେ ଝିଲମିଲ ଖରା ଦେଖୁଥିଲେ ଓ ମନ୍ଦ ପବନ ଉପଭୋଗ କରୁଥିଲେ । ଏଇ ସମୟରେ ବାପା ତାଙ୍କର ଦାଆ ଖଣ୍ଡେ ଧରି ଦାଣ୍ଡକୁ ଓହ୍ଲେଇଲେ । ନବଘନ ବାବୁ ପଚାରିଲେ—"ବିଲକୁ ଗ୍ଲଲ ?"

ନବଘନ ବାବୁଙ୍କ ବାପା ଛୁଡ଼ା ହେଲେ, କହିଲେ—"ନାଇଁ ବା. ବିଲକୁ ଏଇନାକେ ଯାଇ କ'ଣ କରିବ ? ଯାଉଛି—ଆରେ ସେ କ'ଣ୍ଟ ନାଇଁ ଗାଈ ମୁହଁରେ କ୍ଷୀର । ଗାଈକୁ ଖୋଇବ ସେମିତ କ୍ଷୀର ପାଇବ ଯେମିତି । ଆଉ ସେ ଶଳା କ କାନ୍ଥାର ହେଲ ସେ ସ୍ୱାଃପ ଗୋରୁଙ୍କ ପେଲ ଚରିଭୁଇଁ କ'ଣ ଟିକେ ଅଛି ? ଯାଉଛି । ଦେଇ ସେ କେନାଲ କରୁ ଘାସ ଗୋଛାଏ କାଟି ଆଣିବି । ଯିବୁନି ? ଯିବୁ ବୋଇଲେ ଆ', ବିଲ ଆଡ଼େ ଯେଉଁଏ ବୁଲି ଆସିବା ।"

ନବଘନ ବାବୁ ଏହାକୁ ଅପୂର୍ବ ସୁଯୋଗ ମଣିଲେ ଓ ତତ୍‌କ୍ଷଣାତ୍ ଯିବା ପାଇଁ ଉଠି ପଡ଼ିଲେ । ଚପଲ ଭିତରେ ଗୋଡ଼ ଗଳେଇଲେ, ପର ମୁହୂର୍ତ୍ତରେ ଭାବିଲେ ପାଣି କାଦୁଅ ପଡ଼ିବ ତ ? ଚପଲ ଖୋଲି ରଖି ଫୁଙ୍ଗୁଳା ପାଦରେ ନବଘନ ବାବୁ ବାପାଙ୍କ ପଛେ ପଛେ ଗ୍ଲଲେ । କିଛି ବାଟ ଯାଇ ନବଘନ ବାବୁ ଅନୁତପ୍ତ ହେଲେ ଯେ ଘରେ ରବର ଶୁ-ହଳେ ଥିଲା, ଆଣିଥିଲେ ହୋଇଥାନ୍ତା ।

ଅବଶେଷରେ ନବଘନ ବାବୁଙ୍କ ନିକଟରେ ସେହି ସୁବର୍ଣ୍ଣ ସୁଯୋଗଟି ଆସି ଉପସ୍ଥିତ ହେଲା । ତାଙ୍କର ବିଲ ଜମି ଉପରେ ଘାସ ଗୋଛାକ ପକେଇ ଦେଇ ନବଘନ ବାବୁଙ୍କ ବାପା ଗାମୁଛାରେ ଦେହର ଝାଳ ପୋଛୁଲେ, ନବଘନ ବାବୁଙ୍କ ଦେହରୁ ମଧ୍ୟ ଗମଗମ ହୋଇ ଝାଳ ବୋହୁଥିଲା, ରୁମାଲ ଦରାଣ୍ଡୁଥିଲେ ଯେ, ବାପା ତାଙ୍କର କୋଡ଼ରା ଗାମୁଛାଟି ବଢ଼େଇ ଦେଲେ, ମସିଆଁ ଗନ୍ଧ ଗୁଡ଼ୁଥିଲା, ନବଘନ ବାବୁ ଦୀର୍ଘଶ୍ୱାସ ନେଇ ଝାଳ ପୋଛି ହଠାତ୍ ସେଇ ହିଡ଼ ଉପରେ ବସି ପଡ଼ି କହିଲେ—"ବାପା ଟିକେ ବସି ବିଶ୍ରାମ ନିଅ । ତା'ପରେ ଯିବା ।"

ନବଘନ ବାବୁଙ୍କ ବାପା ଠିଆ ହୋଇ ରହିଥିଲେ—ଡେଙ୍ଗା ହୋଇ ଶକ୍ତ ଗଢଣର ମଣିଷ, ବୁଢ଼ା ହେଲେଣି, ଦାନ୍ତ ସବୁ ଝଡ଼ିଗଲାଣି, ପାଳୁଆ ପାଟି, ମୁହଁଯାକ ଅନାବନା ବୁଢ଼ି, ଧଳା ହୋଇଗଲାଣି । ଧୂଡ଼ୁ ଧୂଡ଼ୁ ଶିଥିଳ ଚମ । ହାତରେ ଧରିଥିବା ଦା'ଟି ଘାସ ଗୋଛାକ ଉପରେ ଫିଙ୍ଗି ଦେଲେ, ଆଣ୍ଠୁଲୁଗ କଇଆ ଖଣ୍ଡିକ ଟେକି ନାନପାନୁ ଦେଖେଇ ଅଣ୍ଟିରେ ଖୋସିଲେ, ତା'ପରେ ଲଥ୍‌କନା ବସିପଡ଼ି ହାଇତୋ ଗିଲ୍‌କୁ ଭୁଇଁରେ ଲେଟାଇ, ଦୁଇ ଆଣ୍ଠୁ ଉପରେ ଉପରେ ହାତ ଦ'ଟାକୁ ଲମ୍ବେଇ ଦେଲେ ।

ସ୍ୱାଡ଼ୁ ମ୍ୟାଡ଼ୁ ନାନା କଥା ମଝରେ ନବଘନ ବାବୁ ଅସଲ ପ୍ରସଙ୍ଗ ଉତ୍‌ଥାପନ କରନ୍ତେ, କୋଟରଗତ ଆଖି ଦିଟା ବଡ଼ ବଡ଼ କରି, ଲମ୍ବିଲା ହାତକୁ ଯାକି ନେଇ ମୁଣ୍ଡ ଉପରେ ରଖି ନବଘନ ବାବୁଙ୍କ ବାପା କହିଲେ—"ହଇରେ କ କଥା ଇଏ ! ଜମି ବିକି ଦବୁ ? ଏଁ ! ଆଏ କ ଅଭୁଲ କଥା ସ୍ତେ ! ନାଇ ଇଏ ଗୋଟାଏ କଥା ? ଏଁ ? ଜମି ବିକ ଦବୁ ?"

ଫମ୍ପା ଆବେଗ ଅପେକ୍ଷା ବାସ୍ତବତାର ମୂଲ୍ୟ ଯେ ବର୍ତ୍ତମାନ ପରିସ୍ଥିତିରେ ଅଧିକ ଗୁରୁତ୍ୱପୂର୍ଣ୍ଣ—ତାହା ବାପାଙ୍କୁ ବୁଝାଇବାପାଇଁ ନବଘନବାବୁ ଆପ୍ରାଣ ଉଦ୍ୟମ କଲେ । କେଉଁ କେଉଁ କାରଣରୁ ବାପା ଜମି ବିକିବା ପାଇଁ ନାରାଜ ଓ କେଉଁ କେଉଁ କାରଣରୁ ନବଘନ ବାବୁ ବିକିଦେବା ସପକ୍ଷରେ ସେସବୁ ଗୋଟି ଗୋଟି କରି ଉଭୟ ପକ୍ଷ ଓ ବିପକ୍ଷ କାରଣ ସମୂହକୁ ତଉଲି ଦେଖାଇବା ପାଇଁ ନବଘନ ବାବୁ ସତର୍କତାର ସହ ଧୀରେ ସୁସ୍ଥେ ଯୁକ୍ତି ବାଢ଼ୁଥିଲେ । ମାତ୍ର ନବଘନ ବାବୁ ବିରକ୍ତ ହୋଇ ପଡ଼ିଲେ ଯେ ବାପା ତାଙ୍କର ସେ ସବୁ ପାଖକୁ ହିଁ ମାଡ଼ୁ ନାହାନ୍ତି । ଅଗତ୍ୟା ବାଧ୍ୟ ହୋଇ ନବଘନ ବାବୁ ଜମି ଓ ହାତୀ ଉପମାଟି ଉତ୍‌ଥାପନ କଲେ । ବାପା ତାଙ୍କର ବେଗରେ ଫାଟିପଡ଼ି କିଛି ସମୟ ମୂକ ହୋଇ ବସି ରହିଲେ, ତା'ପରେ କ୍ରୋଧ ବର୍ଷିଗଲେ — "ହଇରେ ଏ ବାଳୁଙ୍ଗା, ହାରାମ୍-ଜାଦା—ଜମି ମାହାତ୍ମ୍ୟ ତୁ କ'ଣ ବୁଝିବୁ ? ଜମି ଆଉ ହାତୀ ଏକାକଥା ହେଲା ? ଏ ? ନାଇ ନାଇ ଇଏ ଗୋଟାଏ କଥା ? ହଇରେ ତୋ' ମୁଣ୍ଡକୁ ଏ ଭୂତ କୋଉଠୁ ପଶିଲା ? ଏଁ ? ହଇରେ ଜମି ସାକ୍ଷାତ ଲକ୍ଷ୍ମୀ ଠିକ ? ଧରଣୀ ମାତା ? ବଣିକ ମାନେ ହେଇଛୁ ଇଏ ? ଲଭ ଉଠିଲାନ, ଦିଅ ବିକି ଦିଅ । କହିଲୁ କ'ଣ ନା—ଆରେ ଏ ବାଳୁଙ୍ଗା, ତୋ' ଅଜା ଥିଲେଥିଲେ, ହେଇ ଅନା, ହେ-ଇ ସେ—", ଜମି ଆଡ଼କୁ ହାତ ବଢ଼େଇ, ମୁହଁ ବୁଲେଇ ଦେଇ ନବଘନ ବାବୁଙ୍କ ବାପା ହଠାତ୍ ହେଜିଗଲେ ! ଆଚମ୍ବିତ ହେଇଗଲା ପରି ବସିବା ଥାନରୁ ଧାଇଁ ଯାଇ ଠିଆ ହୋଇପଡ଼ି ଜମି ଉପରେ କାହିଁ କେଉଁଆଡ଼ୁ ଆସି ବସିଥିବା ଗୋଟାଏ ଶାଗୁଣା ଆଡ଼କୁ କଟମଟ କରି ଚାହିଁ ରହିଲେ । ଆଖି ଦିଟା ତାଙ୍କର ଜଳୁଥିଲା । କିଛି ସମୟ ତା'ପରେ—"ଭାର୍ ଗିହାଳ ପୁଅ ! ଶଳା ମୋଅରି ଜମି ଉପରେ ଆସି ବସିବାର ଥିଲା ? ସ୍ୱାଏ ! ତା' ମାଆଗି — " କହୁ କହୁ ନବଘନ ବାବୁଙ୍କ ବାପା ହଠାତ୍ ନବଘନ ବାବୁ, ତାଙ୍କ ଜମି, ଓ ଜମି ଉପରେ ବସିଥିବା ଶାଗୁଣା ଆଡ଼କୁ ପିଠି କରି ଘାଇ ଗୋଲ୍ଲକ ମୁଣ୍ଡ ଉପରକୁ ଟେକି, ତମ ତମ ହୋଇ ଲମ୍ବା ଲମ୍ବା ପାହୁଣ୍ଡ ପକଉ ପକଉ ଘର ଆଡ଼କୁ ମୁହାଇଲେ, ଓ ଅନତିଦୂର ଯା'ନ୍ତେ କାହାକୁ ଦେଖି ପଚାରିଲେ— " କିଓ ପଧାନେ, ଏ ତାଆଣିଆ ଖରାରେ କୁଆଡ଼େ ବାହାରିଲ ? ବଡ଼ି ଫିଡ଼ି ଖୋଜିଛ କି କାନରେ ? ଦେଲି ଝାଣ୍ଡେ ।"

# ସୀତାର ବାସନା

ବିନ୍ଦୁଉତ୍ସବ ପରେ ଭୁବନେଶ୍ୱର ଆସିଥିଲି । ଆଜି ଅପ୍ରତ୍ୟାଶିତ ଭାବେ ତା ସାଙ୍ଗେ ଦେଖା ହୋଇଯିବା ପରେ ଆମେ ଦୁହେଁ ରିକ୍ସାରେ ବସିଲୁ ଷ୍ଟେସନ ଉଦ୍ଦେଶ୍ୟରେ । ଶାଢ଼ୀ କାନିକୁ ଜାବୁଡ଼ିକରେ ଧରି ସୀତା ରିକ୍ସାରେ ଗୋଟାଏ କୋଣରେ ବସିପଡ଼ି ପଚାରିଲେ "ତମେ କଟକ ଯିବ ତ ?" ମୁଁ ରିକ୍ସାରେ ଚଢ଼ି ନଡ଼ି ପଚାରିଲି—"ତୁ ସବୁଦିନ ଯିବା ଆସିବା କରୁଛୁ ?" ସୀତା ମୁଣ୍ଡ ଲାଡ଼ି ହଁ କଲାରୁ ମୁଁ ରିକ୍ସାରେ ତା କଡକୁ ଲାଗି ବସି ଥାଇ ଆଉ ଟ୍ରେନରେ କାହିଁକି ଯାଉଛୁ ବୋଲି ପଚାରିବାରୁ ସୀତା କାନ୍ଧକୁ ଝାଙ୍କି ଦେଇ କହିଲା—" ଧେତ୍, କଟକ ବସ୍‌ରେ ଏମିତ ହାଉ ଯାଉ ଭିଡ଼, ସେଥିରେ କ'ଣ ମଣିଷ ଯା'ନ୍ତି ! ଟ୍ରେନରେ କେତେ ଭଲ । ଦୁଆର ପାଖେ ଛିଡ଼ା ହୋଇ ବାହାରକୁ ଚାହିଁ ଚାହିଁ ବେଶ୍ କଟକରେ ପହଞ୍ଚିଯିବ । ମୋ' ମୁହଁରୁ ସମୟ ନଷ୍ଟ ହେବା କଥା ବାହାରୁ ବାହାରୁ ସୀତା ମତେ ଓଲଟି ଚୁପ୍ କରେଇ ଦେଇ କହିଲା—"ଓଃ, ସେ ସବୁ ମଜ୍ଜି ତମେ ବୁଝି ପାରିବନି । ଚାହିଁନ ତ କେବେ ତମେ, କ'ଣ ଜାଣିବ ?"

ପଚାରିଲି—"ଓଃ, ତୁ ଜାଣି ଯାଇଛୁ ପରା ।"

—"ହଁଉ ।"

—"କ'ଣ ?"

—" ମଜ୍ଜି । ତମେ କୋଉଠୁ ବୁଝିବ ? ଅନୁଭବୀ ଏକା ଜାଣେ ।" କହି ସୀତା ମୁହଁ ବୁଲାଇ ମୋତେ ଚାହିଁଲା । ଓଠ ଚପି ଟିକେ କହିଲା । ଓଠ ଚପିଲା ବେଳେ ତା' ହନୁ ହାଡ଼ ସ୍ପଷ୍ଟ ଉଚ୍ଛୁଙ୍କି ଉଠିଲା । କହିଲା—"ତା' ଛଡ଼ା ଆଉ ଗୋଟାଏ ଗୁମର୍ ଅଛି ।"

—"କି ଗୁମର୍ ?"

"ମୁଁ ପ୍ରେମରେ ପଡ଼ି ଯାଇଛି ।"

କହି ସିଧା ମୋ ମୁହଁକୁ ଚାହିଁଲା । ତା'ର ବିଶୀର୍ଣ୍ଣ ଆଖି-ତଳ କଳା ପଡ଼ି ଯାଇଥାଏ । ମୁରୁକି ମୁରୁକି ହସି କହିଲା—"ମଞ୍ଚେଶ୍ୱର ପାରି ହେଲା ପରେ ଗୋଟିଏ ବଡ଼ କେନାଲ୍ ପଡ଼େନି ? ସେଇ କେନାଲ୍ କୂଳରେ ଗୋଟିଏ ଟୋକା ସବୁ ଦିନ ବନ୍ଶୀ ପକେଇ ବସିଥାଏ । ଯେଏମିତ ତାଳଚେର୍ ପାର୍ ହବେ, ବୁଲି ପଡ଼ି ମୋତେ ଖୋଜିବ, ଆଉ ତା'ପରେ ଦୁଆର ମୁହଁଟି ମତେ ଦେଖିଲା ମାତ୍ରେ ଦାନ୍ତ ନିକୁଟି

ଖୁବ୍ ଜୋରରେ ହାତ ହଲେଇବ ।" ଏତିକି କହି ସୀତା ଗମ୍ଭୀର ହୋଇଗଲା । ମୁଁ ଠୋ ଠୋ ହୋଇ ହସି ହସି କହିଲି—'ହଁ ହଁ, ତତେଇ ତ ସେ ଅନେଇ ବସିଥାଏ ।"

—"ବସିଥାଏ, ବସିଥାଏ, ତମେ ଜାଣିନ ।"

ଷ୍ଟେସନ ପାଖରେ ରିକ୍ସା ଅଟକିଲାରୁ ଆମେ ଓହ୍ଲାଇ ପଡ଼ିଲୁ । ଷ୍ଟେସନର ପାହାଚ ଚଢ଼ିଲାବେଳେ ସୀତାର ପ୍ରୋଫାଇଲ୍ ଦେଖିଲି—ଗାଲ ଦି'ଟା ଏକଦମ୍ ଭିତରକୁ ପଶି ଯାଇଛି । ମୁହଁଟା ଗୋଜିଆ ଦେଖାଯାଉଛି । ସହଜେ ତ ଦେହର ରଙ୍ଗ କଳା । ଶୁଖି ଚେମେଡ଼େଇ ଗଲାଣି ଏବେ । ବୟସ ବି ତ ପଚିଶଟା ହେଲାଣି—ଛବିଶ ସତେଇଶ ହେବ ନା କ'ଣ । ଦେଖାଯାଉଛି ଯେମିତି ଗୋଟିଏ ବୁଢ଼ୀ କେଣ୍··· ଆରେ ଛିଃ ଛିଃ ଛିଃ ··ଜିଭ କାମୁଡ଼ି ପକେଇଲି ମୁଁ । ଯେତେ ହେଲେ ମୋର ପୂର୍ବତନ ପ୍ରେମିକା ! ତା' ବିଷୟରେ ଏପରି ଅପରିଚ୍ଛନ୍ନ ଉପମା ! ଛିଃ ଛିଃ କେତେ ଅଧମ ମୁଁ ! ନିଜକୁ ଧିକ୍କାରିଲି । ଏବେ ସିନା ଏମିତି । କିଶୋରୀ ବୟସରେ ତା'ର ଯାହା ଶ୍ରୀ ଥିଲା ନା । ସ୍ନିଗ୍ଧତାର ଛବିମୂର୍ତ୍ତି ଯେମିତି । ସେଥିପାଇଁ କି କ'ଣ କେଜାଣି—ସିଧା ତା' ବାପା ପାଖକୁ ଗୋଟିଏ ଚିଠି ପଠେଇଲି—"ଆପଣଙ୍କ ଝିଅକୁ (ସୀତାକୁ) ମୁଁ ବିବାହ କରିବାକୁ ଚାହେଁ ।" ତା'ପରେ କ'ଣ ମନେ ହେଲା ଗୋଟିଏ ଧାଡ଼ି ସେଥିରେ ଯୋଡ଼ି ଦେଲି—"ଅବଶ୍ୟ ଏହି ସୂତ୍ରରେ ଯେ ଯଦି ଗୋଟିଏ ଭଲ ଚାକିରିଟେ ପାଏ ।" ପରେ ଅବଶ୍ୟ ବହୁତ ଥର ମୁଁ ଚିନ୍ତା କରିଛି ଯେ ଏପରି ଗୋଟିଏ ଧାଡ଼ି କାହିଁକି ଯୋଡ଼ିଲି ? ଭାବିଲି ବୋଧହୁଏ ଏଥିପାଇଁ ଯେ ସୀତା ବାପା ଜଣେ ଅଫିସର, ତେଣୁ ସେମିତିକା ଯଥାଯୋଗ୍ୟ ନ ହେଲେ ତାଙ୍କ ଜୋଇଁ ହିସାବରେ ମାନିବନି ମତେ । ମାତ୍ର ମୋ ଭାଗ୍ୟ ଏପରି ଯେ ଚିଠିଟି ପାଇ ସୀତା ବାପା ଚଣ୍ଡମୂର୍ତ୍ତି ଧାରଣ କରି ଆମ ଘରେ ଆସି ଶୁଣେଇ ଦେଇଗଲେ—"ସେ ଗଳି ଭିତରକୁ ଆଉ ଦିନେ ପଶିଛୁ ତ, ତୋ' ଟାଙ୍ଗ ଟୁଣ୍ଡା କରିଦେବି"। ସୀତା ବାପା ଏପରି ପ୍ରଚଣ୍ଡ କଣ୍ଠରେ କହିଲେ ଯେ ପାଖ ପଡ଼ିଶା ସମସ୍ତେ ଆସି ସେଠି ଜୁଟିଗଲେ ଓ ତା'ପରେ ସୀତା ବାପା ଚାଲି ଆସିବା ପରେ ସମସ୍ତେ ମୁଣ୍ଡପୋତି ବସି ରହିଥିବା ମୋ ବାପାଙ୍କୁ ଜଣ ଜଣ କରି କହିଗଲେ—"ଛିଃ ଛିଃ ଆର୍ତ୍ତି ବାବୁ, ଆପଣଙ୍କ ପୁଅଟା ଏତେ ବଦ୍-ଚରିତ୍ର !" ଏତେ ହତଭାଗା ମୁଁ ! ଏ ଘଟଣା ପରେ ଦି' ଦିନେ ହଠାତ୍ ବଜାରରେ ସୀତାକୁ ଦେଖି ତା' ପଛେ ପଛେ ତରତର କରି ପାଦ ପକେଇ ଡାକିବାକୁ ଲାଗିଲି---'ସୀତା ! ସୀତା !' ସୀତା ଶୁଣି ନ ଶୁଣିଲା ପରି ତା' ଭାରି ନିତମ୍ବ ଦୋହଲେଇ ଦୋହଲେଇ ଦୋକାନ ଭିତରକୁ ପଶିଗଲା, ଆଉ ହତବାକ୍ ମୁଁ ସେଠି ଛିଡ଼ା ହୋଇପଡ଼ି ଦେଖିଲି ଆଖ ପାଖର ଲୋକଗୁଡ଼ାକ ମୋ' ଆଡ଼େ ଚାହିଁ ଖେଁ ଖେଁ ହୋଇ ହସୁଛନ୍ତି ।

ସେହି ନାଟକୀୟ ଲଜ୍ଜା ସକାଶେ ହେଉ କି ସୀତାର ନିତମ୍ବ ଦୋହଲେଇ ଚାଲିଯିବାର ସେ ଦୃଶ୍ୟ ଯୋଗୁଁ ହେଉ କି ସେଦିନ ମୁଣ୍ଡପୋଡ଼ ବସି ରହିଥିବା, ଛୁଃ ଛୁଃ ଆତ୍ମିୟୀବୃନ୍ଦଙ୍କ କାକୁସ୍ଥ ମୁହଁଟି ମନେ ପଡ଼ିଯିବାରୁ କି କେଉଁଥି ପାଇଁ କେଜାଣି ସେହି ମୁହୂର୍ତ୍ତରେ ନିଜ ଗାଲରେ ନିଜେ ଢ଼'ଆପ୍‌ପଡ଼ କଷି ଦେବା ପାଇଁ ଇଚ୍ଛା ହେଲା । ଆଉ ସେଦିନ ହଜୁଉଠା ଆକାଶ ତଳେ ବସି ବସି ମୁଁ ଭାବିଲି—ସୀତା କ'ଣ ଭାବୁଛି ମୁଁ ତା' ବିନା ପାଗଳ ହୋଇଯିବି ? ନା ତା ବାପା ମୋତେ ଗୋଟାଏ ଲୋଫର୍ ଠଉରେଇଛନ୍ତି ? ଠିକ୍ ଅଛି ।

ବାସ୍, ଏଇ ଠିକ୍ ଅଛି ତା'ପରେ ମୋ ମନ ଭିତରେ ଏପରି ଜମିଗଲା ଯେ ଶେଷରେ ମୁଁ ଯଥା ସମୟରେ ପାସ୍ ଫାସ୍ କରି ଚାକିରୀରେ ପଶି ବିବାହିତ ହୋଇ ଗୋଟାଏ ପିଲାର ବାପା ହେବା ପରେ ଆଜି ହଠାତ୍ ବୋର୍ଡ ଅଫିସ୍ ସାମନାରେ ପାଞ୍ଚଟା ବେଳେ ଭ୍ୟାନିଟି ବ୍ୟାଗ ହାତରେ ସୀତାକୁ ଦେଖି ଅଟକି ଯାଇଗଲି ।

ଦୋ' ଦୋ' ପାଞ୍ଚ ହୋଇ କିଛି ସମୟ ଚାହିଁ ରହିଲି ପରେ ହଠାତ୍ ତା' ସାମନାକୁ ମାଡ଼ିଗଲି—"କିଲୋ ସୀତା ! ତୁ ଏଠି କୁଆଡ଼େ ?" କିଛି ସମୟ ବଲବଲ କରି ଚାହିଁ ରହିଲା ପରେ ହଠାତ୍ ତା' ମୁହଁରେ କି' ଚୁଡ଼ାଏ ପ୍ରସନ୍ନତା ଖେଳିଗଲା—"ଆରେ ଶିବଭାଇ !"

ସେଠୁ ଏଇ ଷ୍ଟେସନ ପହଞ୍ଚିବା ଭିତରେ କଥା ପ୍ରସଙ୍ଗରେ ବୁଝିଲି ଯେ ସେଦିନ ସେଇ ଚଣ୍ଡୀମୂର୍ତ୍ତି ଧାରଣ କରିଥିବା ସୀତା ବାପା ଅବସର ନେଲା ପରେ ଏବେ ଦିନେ ସୀତାକୁ ଡାକି କହିଲେ—'ତୁ ଦୁଇଟାରେ କାହିଁକି ଘରେ ବସି ରହିବୁ । ଯା' ଚାକିରୀ କରିବୁ ।' ମୁଁ ଥଟ୍ଟାରେ କହିଲି—'କାହିଁ ଗୋଟାଏ ବର ଦେଖିକରି ଝୁଲେଇ ଦେଇ ଶାଶୁଘର ପଠେଇ ଦେଲେନି ?' ମୋ'ର ଏ ଥଟ୍ଟାର ଜବାବରେ ସୀତା କହିଲା—'ଆମ family ପାଇଁ ସେମିତିକା ଗୋଟାଏ ବର ଦରକାର ନା—ତମ ଘରେ ଏମିତି ବାମା ବାମା ହେଲେ ଚଳିବନି ମ ।' ମୁଁ ଜାଣି ପାରିଲି ନାହିଁ ସୀତା ହଠାତ୍ ମୋ'ର କୈଶୋର ପ୍ରେମକୁ ଚିହ୍ନାଇଲା ନା ତା' ଭିତରେ ଜମି ରହିଥିବା ପ୍ରବୃତ୍ତ କଷ୍ଟକୁ ସେ ଫୁଙ୍କି ଉଡ଼େଇ ଦେବା ପାଇଁ ଏମିତି କହିଲା । ତା' ମୁହଁକୁ ଚାହିଁଲି । ମାତ୍ର ମୁହଁଟା ଏବେ ଏମିତି ସେମେଣ୍ଟ ପଡ଼ିଯାଇଛି ଯେ ସେଥିରେ କିଛି ଭାବ ବାରି ପାରିଲିନି ମୁଁ । ଅଗତ୍ୟା ହସିବା ଉଚିତ୍ ମନେ କରି ହସିଦେଲି ।

ପ୍ଲାଟଫର୍ମ ଭିତରକୁ ଯାଇ ଦେଖିଲି ଗାଡ଼ି ଲେଟ୍ ଅଛି । କହିଲି—'ବାଦାମ ଖାଇବୁ ?'

ସୀତା କହିଲା—'ହୁଁ, ଝାଲ୍ ମୁଡ଼ି ମିଳନ୍ତା ଯଦି ?'

ମୁଁ କହିଲି—'ଏଇଟା କ'ଣ ସେଇ ବର୍ଷା ଦିନ ହେଉଛି କି ?'

ସୀତା କହିଲା—'ତ' କ'ଣ ହେଲା ?'

ସେଠୁ ଖୋଜି ଖୋଜି ଦେଖିଲି ଗୋଟାଏ କଣରେ ଝାଲ୍ ମୁଡ଼ି ବିକା ହେଉଛି । କିଣିଲି । ସେ ପାଖଟା ବେଶ୍ ନିର୍ଜନିଆ । ଝାଲ୍ ମୁଡ଼ି ଖାଉ ଖାଉ ମୋ ପାଟିରୁ ବାହାରି ପଡ଼ିଲା—'ସୀତା, ତୁ କେମିତି ଶୁଖି ଗଲୁଣି !'

—'ତମ ବିରହରେ ନୁହେଁମ ।'

ସୀତା ହଠାତ୍ ଏପରି ସପ୍ରତିଭ ଭାବେ ଉତ୍ତର ଦେବ ବୋଲି ମୁଁ ଆଶା କରି ନଥିଲି । ମୁଁ ଅଳ୍ପ କ୍ଷୁର୍ଣ୍ଣ ହେଲି । କହିଲି-'ସେ କଥା ନୁହେଁ-ତୁ ଏମିତି ବୁଢ଼ୀ ଭଳି ଦେଖା ଯାଉଛୁ ଯେ ଆଉ ବର ମିଳିବେନି ।'

ସୀତା କହିଲା—'ମିଳିବେ, ମିଳିବେ, ବାପା ଅଣ୍ଟା ଭିଡ଼ି ଖୋଜୁଛନ୍ତି ପରା ।'

ମୁଁ କହିଲି—'ହଁ ମିଳିବେ, ବୁଢ଼ା ବର ।'

ସୀତା କହିଲା—'ତ' କ'ଣ ହେଲା ? ବୁଢ଼ା ବର କ'ଣ ବର ନୁହେଁ ?'

ମୁଁ କହିଲି—'ହଁ, ବର ଯେ, ବାହା ହେଇ ସାରି ଅକ୍ଷୟ ମହାନ୍ତିର ଗୋଟାଏ କ'ଣ ଗୀତ ନାହିଁ ? ରଜାଝିଅ ବାହୁନୁଛି · ସେମିତିକା ବୁଢ଼ା ବର ଦେଖି ବସି ବସି ବାହୁନିବୁ ।'

ସୀତା କହିଲା—'ମୁଁ ରଜାଝିଅ ନୁହେଁ ମ । ହଅଜ୍ ଖଟି ଖାଏ ।'

ମୁଁ ମଉନ ରହିଲି । ଝାଲ୍ ମୁଡ଼ି ଚୋବାଉ ଚୋବାଉ ସୀତା ପୁଣି କଥାର ଖିଅ ଧରିଲା—'ବୁଝିଲ ଶିବ ଭାଇ, ତମର ସେ ରଜାଝିଅଟା ଓଲି ଥିଲା ବୋଲି ବାହୁନୁଥିଲା ନା, ମୁଁ ଯଦି ରଜାଝିଅ ହେଇଥାନ୍ତି ନା,' କହୁ କହୁ ଅଟକ ଯାଇ ସୀତା ଝାଲ୍ ମୁଡ଼ି ପାଟିରେ ପକେଇଲା, ତା'ପରେ କହିଲା—'କ'ଣ କରିଥାନ୍ତି ଜାଣିଚ ? ଉଆସ ଝରକା ପାଖେ ବସି ବସି ଦେଖନ୍ତି ଗେଣ୍ଡାଳିଆ କେମିତି ଫୁର୍ର୍ କିନା ଉଡ଼ିଯାଏ,' କହୁ କହୁ ହଠାତ୍ ସତକୁ ସତ ସୀତା ଝାଲ୍ ମୁଡ଼ି ଠୁଙ୍ଗାଟି ଖୁବ୍ ଜୋର୍‌ରେ ପବନରେ ଉଡ଼େଇ ଦେଲା ।

ସୀତାର ଏ ନାଟକୀୟତାରେ ମୁଁ ପୁଣି ଥରେ ଅପ୍ରତିଭ ହୋଇ ପଡ଼ିଲି । ଭାବିଲି ହସିବାଟା ଉଚିତ୍ ହେବ; ତେଣୁ ହସିଲି ।

# ଛେଉଣ୍ଡ

ଆମେ ଯେତେବେଳେ ପିଲାଥିଲୁ---ଆନନ୍ଦ, ମୁଁ ଆଉ ସୋମନାଥ-ଆମର ସେତେବେଳେ ଅସଂଖ୍ୟ କୌତୁହଳ ଥିଲା । ମେଘ ହେଲେ ମେଘରୁ ବର୍ଷା ଝରେ । ଆକାଶ ତୋରା ଥିଲେ ସୂର୍ଯ୍ୟଙ୍କ ଦେହରୁ ଖରା ଆସେ, ରାତିରେ ସୂର୍ଯ୍ୟ କିରଣ ଚନ୍ଦ୍ରରେ ବାଜି ପୃଥିବୀକୁ ଫେରି ଆସେ । ତେଣୁ ପୃଥିବୀରେ ଜହ୍ନ ରାତି ହୁଏ--- ଏଇମିତି କେତେକ କଥା ଆମେ କ୍ରମେ କ୍ରମେ ଜାଣି ପାରିଥିଲୁ । କିନ୍ତୁ ପବନ ପାଖରେ ଆମର ସବୁବେଳେ ବୁଦ୍ଧି ହଜି ଯାଉଥିଲା । ଆମେ ଆଦୌ ଜାଣି ପାରୁ ନଥିଲୁ ଯେ ପବନ କ'ଣ ? କେଉଁଠାରୁ ଆସେ ? କୁଆଡ଼େ ଯାଏ ? କିଛି ବୁଝି ପାରୁ ନ ଥିଲୁ । ଆମ ଭିତରୁ ଆନନ୍ଦ ଟିକେ ଅଗଚଲା । ଦିନେ ସେ କ୍ଲାସରେ ସାରଙ୍କୁ ପବନ କଥା ପଚାରିଲା ଆଉ ପିଲାମାନେ ସବୁ ହସି ଉଠିଲେ । ସାର୍ ବି' ।

ସେଇଦିନ ଠାରୁ ଆମେ ଠିକ୍ କଲୁ ଯେ ପବନ ଫବନ ବିଷୟରେ ଆମେ ଆଉ ମୁଣ୍ଡ ଖେଳାଇବା ନାହିଁ । ସୋମନାଥ କହିଲା—''ଆମେ ପିଲା ଲୋକ, ପିଲାଙ୍କ ପରି ଚଳିବା ।'' ସୋମନାଥ ଏକଥା କହିଲାରୁ ମୋ'ର ଗୋଟିଏ ଅଜବ ଖିଆଲ ହେଲା---ଆଚ୍ଛା, ଅନ୍ୟ ପିଲାମାନେ ଆମପରି କେବେ ଭାବନ୍ତିନି ? ମୁଁ ଏକଥା ଆନନ୍ଦକୁ ପଚାରିଲି । ଆନନ୍ଦ ସୋମନାଥକୁ ପଚାରିଲା । ସୋମନାଥ ମଝେ ଚୁପ୍ ହେଲା ।

ତତ୍ପରବର୍ତ୍ତୀ ଦିନଗୁଡ଼ିକ ଆମେ କ୍ଲାସରେ, କ୍ଲାସ ବାହାରେ, ଖେଳ ପଡ଼ିଆରେ, ରାସ୍ତାରେ--ସବୁଠାରେ ଅନ୍ୟପିଲାଙ୍କୁ ଲକ୍ଷ୍ୟ କରିବାରେ ଲାଗିଲୁ । କିନ୍ତୁ କିଛି ଜାଣି ପାରିଲୁ ନାହିଁ । ଆନନ୍ଦ ତହୁଁ କହିଲା ଯେ ଆମେ ସେମାନଙ୍କ ଭିତରୁ କେତେଜଣଙ୍କୁ ଏ ବିଷୟରେ ପଚାରିବା । ସୋମନାଥ ମନା କଲା । କହିଲା—ନାଇଁ, ନାଇଁ, ସେମାନେ ଯଦି ସେମିତି କିଛି ଭାବୁ ନଥିବେ ତେବେ ଆମକୁ ପିଲା ଲୋକ କହି ଚିଡ଼େଇବେ । ଆମେ ଦେଖିଲୁ ସୋମନାଥ ଯାହା କହିଲା ଉଚିତ କଥା । ତା'ପରେ ବିଚାର କଲୁ ବାପା, ଅଜା କି ବଡ଼ ମଣିଷ କାହାକୁ ପଚାରିବା । ଏଥର ଆନନ୍ଦ ମନା କଲା । କହିଲା—''ନାଇଁ, ନାଇଁ, ଯଦି ସେଇ ନ ହୋଇଥିବ, ଆମକୁ ସେମାନେ ପିଲା ଭାବିବେ ।''

ଆନନ୍ଦ କାହିଁକି ମନା କଲା ମୁଁ ବୁଝି ପାରିଲି ।

ଦିନେ ସ୍କୁଲ ଛୁଟୀ ପରେ ଘରକୁ ଫେରିଲା ବେଳେ ଦେଖିଲୁ ଆମ ଗଳି ପାଖରେ ଦି'ଜଣ ଲୋକ ଗୋଟିଏ ଗାତ ଖୋଳୁଛନ୍ତି---ଜଣେ ସେଥିରୁ ମୋଡ଼ା ଆଉ ଦାଙ୍ଗରା, ଗୁଣ୍ଡୁଡ଼ାରେ ମାଟି ହାଣି ଉପରକୁ ପକଉଥାଏ ଆଉ ଅ' ମେଲି ଠେଲି

ପେଲୁଥାଏ । ତାଙ୍କୁ ଦେଖି ଆମକୁ ଭୟ ଲାଗିଲା ଏବଂ ସେଇଥିପାଇଁ ଆମେ ସେଠାକୁ ଗଲୁ । ଆଉ ଜଣେ ବୁଢ଼ା ଭଳିଆ ଗୋଟିଏ ଲୋକ ଛିଡ଼ା ହୋଇଥାଏ ସେଠି—ଗୋଟିଏ ହାତ ଛଡ଼ା ବେଣ୍ଟ ଉପରେ ଭର ଦେଇ । ଆଉ ଗୋଟିଏ ହାତ ଅଣ୍ଟା ଉପରେ । ଆମେ ସେଠି ଛିଡ଼ା ହେଲୁ । ଗାତଟି ଗୁଡ଼ାଏ ଉଚ୍ଚ ଖୋଳା ହୋଇଥାଏ । କିନ୍ତୁ ତେଣିକି ଖାଲେ । ଆନନ୍ଦ ପଚାରିଲା—"ଏଠି କ'ଣ ହବ ?"

ବୁଢ଼ାଟି ଆମକୁ ଗୁହିଁ ନାକୁଆ ସ୍ୱରରେ କହିଲା—"ଦେଖ, କ'ଣ ହବ ?" ଆନନ୍ଦ କହିଲା—"ସେଇତ ଆମକୁ ଭୋକ ହେଲାଣି, କ'ଣ ହବ କହନ୍ତୁ ।"

ବୁଢ଼ାଟି ତହୁଁ କହିଲା—"ପୋଖରୀ, ପୋଖରୀ ଖୋଳା ହବ ।"

ସୋମନାଥ କହିଲା—"ହେଃ, ମିଛ କଥା । ଜଣେ ଲୋକ ପୋଖରୀ ଖୋଳି ପାରିବ ?"

ବୁଢ଼ାଟି ସେହିପରି ନାକୁଆ ସ୍ୱରରେ କହିଲା—"କାହିଁକି ପାରିବନି ? ଅଲବତ୍ ପାରିବ ।"

ମୁଁ ପଚାରିଲି—"କେତେ ଗମ୍ଭୀର ହେବ ?"

ବୁଢ଼ାଟି କହିଲା—"ସାତ ପୁରୁଷ ଗମ୍ଭୀର ହେବ ।"

ଆନନ୍ଦ ପଚାରିଲା—"ପାଣି କେତେ ହବ ?

ବୁଢ଼ାଟି କହିଲା—"ପାଣି ? ପାଣି ସାତତାଳ ପାଣି ହବ ସାତତାଳ ପାଣି ତଳେ ଗୋଟିଏ ଫରୁଆ ରହିବ ଫରୁଆ ଭିତରେ ଗୋଟିଏ ଭଅଁର ରଜା-ପୁଅ ଯାଇ...

ସୋମନାଥ କହିଲା—"ଯେଉ ।"

ଆନନ୍ଦ ଓ ମୁଁ ରାଗିଗଲୁ । ସେମାନେ ଦୁଇ ଜଣ ଯାକ ହୋ ହୋ ହୋଇ ହସି ଉଠିଲେ ।

ଆମେ ତିନିଜଣ ତା'ପରେ ଘରକୁ ଫେରିଲୁ । କିନ୍ତୁ ବାଟରେ କେହି କାହାକୁ କଥା କହିଲୁ ନାହିଁ । ଆମ ତିନିଜଣଯାକଙ୍କ ଓଠ ଫୁଲି ଫୁଲି ଉଠୁଥାଏ । ତା'ପରେ ଯିଏ ଯେଝା ଘରକୁ ଗଲାବେଳେ ସୋମନାଥ କହିଲା—"ଆମେ ଆଉ କେବେ କାହାକୁ କିଛି ପଚାରିବାନି ।"

ସେ ଦିନର ସେ ଘଟଣା ପରଠାରୁ ପବନ କଥା ଭୁଲିଯାଇ ଆମେ ଖୋଳା-ଖୋଳିରେ ମାତିଲୁ । ଆମ ସାହିର ଅନ୍ୟ ପିଲାମାନେ ସବୁଦିନ ସ୍କୁଲରୁ ଫେରି ତୁ ତୁ

ଖେଳନ୍ତି । ଆମେ ବ' ତାଙ୍କ ସାଥିରେ ଖେଳନ୍ତୁ । ଆମ ଭିତରୁ ସୋମନାଥ ଅଲ୍ପ ରୋଗିଣା, ଆଉ ସବୁ କହିବାକୁ ଗଲେ ଟିକେ ମେଣ୍ଡିଆ । ଥରେ ସୋମନାଥ 'ହେଇ ସାଲବାଇ ଡ଼ୁ ଡ଼ୁ' କହି ଏକା ଖେଦାରେ ଭିତରକୁ ମାଡ଼ିଗଲା । ଜାଣିନି ନା, ଆଗ-ଥର ଆନନ୍ଦ ତାକୁ ଅପମାନ ଦେଇଥିଲା—"ଗା'ର ପାଖରୁ ପଳେଇ ଆଉଚୁ କ'ଣ ବେ ମାଇଚିଆ, ଧଇଁ ପଇଁ ଯା' ଭିତରକୁ ।" ସୋମନାଥ ସେଥିପାଇଁ ଭିତରକୁ ପଶିଗଲା । କିନ୍ତୁ ହଠାତ୍ ତା'ର ଗୋଡ଼ା ଖସିଗଲା ଆଉ ସାଙ୍ଗେ ସାଙ୍ଗେ ଅନ୍ୟମାନେ ତାକୁ ମାଡ଼ି ବସିଲେ, ସୋମନାଥ ଗୁଞ୍ଜିପିଞ୍ଜି ହେଲା । ଅନ୍ୟମାନେ ସେଠୁ ତାକୁ ଘୋଷାରି ନେଲେ । ଏମିତି ଭାବେ ଘୋଷାରିଲେ ଯେ—ଅଦ୍ଭୁତ ପଥୁରିଆ ଭୂଇଁ, ଘାସ ନାହିଁ, ସୋମନାଥର ଆଣ୍ଠୁ ଗଣ୍ଠି ଛୁଣ୍ଟି ରକ୍ତ ବୋହିଲା । ସୋମନାଥ କାନ୍ଦି ପକେଇଲା । ଆନନ୍ଦର ମୋର ଦୌଡ଼ିଯାଇ ମାନି ଘର ବଗିଚାରୁ ଗେଣ୍ଡୁ ଫୁଲ ପତ୍ର ଆଣି ଚକଟି ତା ଆଣ୍ଠୁରେ ଲଗେଇ ଦେଲୁ ।

ସଞ୍ଜ ହୋଇଗଲା । ଅନ୍ଧାର ଗୁଡ଼ୁଗୁଡ଼ୁ କରୁଥାଏ । ଆମେ ସୋମନାଥକୁ ତା'ଘରେ ଛାଡ଼ିବାକୁ ଗଲୁ । ସୋମନାଥର ବାପା ଖୁବ ଗରିବ । ନି. ପ୍ରା. ଇସ୍କୁଲରେ ମାଷ୍ଟର ଥାଆନ୍ତି । ସଞ୍ଜବେଳେ ଗୃହାଳି ପିଲାଙ୍କୁ ଟିଉସନ କରାନ୍ତି । ପିଲାମାନେ ସ୍ଲେଟ ଖଡ଼ି ହାତରେ ଧରି ସମସ୍ତଙ୍କ ସାମନାରେ ବସିବା ପରି ଗୁହିଁ ଥାନ୍ତି । ଧୁକୁଧୁକୁ ହୋଇ ଲଣ୍ଠନଟି ଜଳୁଥାଏ । ସୋମନାଥର ବାପା ଗୋଟିଏ ଚଟେଇ ଉପରେ ବସି, ସରୁଆ ତେଲିଆ ବେତଟାଏ ସାପ ଜିଭ ପରି ଲହଲହ କରାଉଥାନ୍ତି । କାଶ ରୋଗୀ । ପଚାରୁଥାନ୍ତି—"ପାଞ୍ଚ୍ ପଞ୍ଚା-ଆ ? (ଖକ୍-ଖକ୍) -ପାଞ୍ଚ୍ ପଞ୍ଚା-ଆ ? ପାଆଞ୍ଚ ପଞ୍ଚା ଆସୁନି ବେ ଶଃ..."

ସେତିକିବେଳେ ସୋମନାଥ ଯାଇ ହାଜର ହେଲା । କାନ୍ଦି କାନ୍ଦି ଅଖିରେ । ସୋମନାଥର ବାପା ଅନେଇଲେ । "ବାହୁଡ଼ିବା ହେଲା ? ହଉ ହଉ---ଯାଅ, ଠିଆ ହୋଇ ଆଉ ଶ୍ରୀଚରଣକୁ ବାଧା ଦଉଛ କାହିଁକି ? ଏଁ ? ଆଣ୍ଠୁ କ'ଣ ହେଲା ? ହଇରେ, ଅଇଲୁ ଅଇଲୁ ଇୟାଡ଼େ-ଆ'ବେ ଇଆଡ଼େ ଶଳା-ଶଳାକୁ ମୁଁ ବାରମ୍ବାର ମନା କରୁଛି---ଶଃଳା-" । ତା'ପରେ, ଇଃ ମାଲେ, ସପାତ୍ ସପାତ୍ କରି ଖାଲି ଶବ୍ଦ ହେଉଥାଏ । ଆଉ ସୋମନାଥ ପ୍ରାଣପଣେ ଚିତ୍କାର କରୁଥାଏ---ଇଲୋ ବୋଉଲୋ ମରିଗଲି ଲୋ ମରିଗଲି ଲୋ ମରିଗଲି-

ଆନନ୍ଦର ମୋ'ର ଦେହ ଶୀତେଇ ଉଠିଲା । ଆମେ ଆଉ ସେଠି ଛିଡ଼ା ହୋଇ ପାରିଲୁନି । ଖୁବ୍ ଜୋରରେ ଦୌଡ଼ି ପଳେଇ ଆସି ପୋଲ ଉପରେ ବସି ରହିଲୁ ।

ତା'ପର ଦନ ସାହୁର ଅନ୍ୟ ପିଲାମାନଙ୍କ ଆଗରେ---ଯେଉଁମାନଙ୍କ ସାଥିରେ ଆମେ ଡୁ ଡୁ ଖେଳୁ---ସୋମନାଥର ବାପା କଥା କହିଲି । କ'ଣ କହିଲେ, କେମିତ ବାଡେ଼ଇଲେ ସବୁ ଗୋଟି ଗୋଟି କରି ବର୍ଣ୍ଣନା କରିଗଲି । ଅନ୍ୟ ପିଲାମାନେ ଖାଲି ମନ ଦୁଃଖ କଲେ । ଜଣେ କହିଲା "ତା'ହେଲେ ଚାଲ ଘାସୁଆ ଜାଗାଟେ ଖୋଜିବା ।" ତତ୍‌କ୍ଷଣାତ୍ ଆମେ ଘାସୁଆ ଜାଗାଟେ ଖୋଜିବା ପାଇଁ ବାହାରି ପଡ଼ିଲୁ । ଚାରିଆଡ଼େ ବୁଲିଲୁ । କିନ୍ତୁ କେଉଁଠାରେ ହେଲେ ପାଇଲୁ ନାହିଁ । ସମସ୍ତେ ଶେଷରେ ନିରାଶ ହୋଇ ଗୋଟିଏ ଜାଗାରେ ରୁଣ୍ଡ ହେଲୁ । ଚିତ୍ ହୋଇ ଶୋଇ ପଡ଼ି ଭଲୁଅଙ୍କ ପରି ଚାହିଁ ରହିଲୁ ଆକାଶକୁ ।

ଏଇ ସମୟରେ ଆନନ୍ଦ ଆସି ପହଞ୍ଚିଲା । ସାଙ୍ଗରେ ତା ମାମୁଁ । ଆନନ୍ଦଙ୍କ ଘରେ ସମସ୍ତେ ତାଙ୍କୁ ବାଘ ମାମୁଁ ବୋଲି ଡାକନ୍ତି । ମିଲିଟାରିରେ କାମ କରନ୍ତି ସେ । ବାଘ ମାମୁଙ୍କୁ ଦେଖି ଆମେ ସମସ୍ତେ ଖୁସି ହୋଇଗଲୁ । ସବୁକଥା ଭୁଲିଯାଇ ତାଙ୍କଠୁ ଆମେ ବହୁତ ଯୁଦ୍ଧଗପ ଶୁଣିଲୁ । ଢୋ ଢୋ ହୋଇ ବନ୍ଧୁକ ଫୁଟୁଥିବ---କମାଣ ଗର୍ଜୁଥିବ---ସାଇଁ ସାଇଁ ହୋଇ ନିଆଁ ହୁଳା ଆସି ଛୁଟିକି ପଡ଼ୁଥିବ---ତା'ର ଭିତରେ ତମେ ଖାଉଥିବ, ପିଉଥିବ, ଶୋଉଥିବ---ଆଉ ମନେକର, ଶତ୍ରୁସୈନ୍ୟ ଆଗରେ ଅଛନ୍ତି---ବୁଦୁବୁଦୁକିଆ ଜଙ୍ଗଲ ଜାଗା କି ବଡ଼ବଡ଼ ପଥର ଖଣ୍ଡ ପଡ଼ିଛି---ତମେ ଆକ୍ରମଣ କରିବା ପାଇଁ ଆଗେଇ ଯିବ---କେମିତି ଯିବ ? ଗୁରୁଣ୍ଡି ଗୁରୁଣ୍ଡି ଯାଉଥିବ---କହୁଣି ଛିଣ୍ଡି ଯିବ---ଆଣ୍ଠୁ ଛିଣ୍ଡି ଯିବ---ତମେ କିନ୍ତୁ ସେମିତି ଗୁରୁଣ୍ଡି ଥିବ ।

ଡମ୍ବରୁ କହିଲା, "ମୁଁ ବଡ଼ ହେଲେ ଯୁଦ୍ଧକୁ ଯିବି ।"

ବାଘ ମାମୁଁ ହୋଃ ହୋଃ କରି ହସି ଉଠିଲେ---"ଏମିତି ଚେହେରାରେ ଯୁଦ୍ଧକୁ ଯିବ ? ସେଥିପାଇଁ ଖେଳ କସରତ୍ କରିବାକୁ ପଡ଼ିବ---ଚେହେରା ବନେଇବାକୁ ପଡ଼ିବ ।" କହି ବାଘ ମାମୁଁ ତାଙ୍କର ମୋଟା ବାହୁଲ ଜଣ ମୋଡ଼ିବାକୁ ଲଗିଲେ ।

ମୁଁ କହିଲି---"ଖେଳ କସରତ୍ ପାଇଁ ଆମର ଜାଗା କାହିଁ ?"

ବାଘ ମାମୁଁ କହିଲେ---"ନ ଥିଲେ ନାହିଁ; ବ୍ୟାୟାମ କର ।" କହି ସେ ପାଟେ ସାଙ୍ଗେପିନ୍ଧିଥିବା ଲୁଙ୍ଗିକୁ କଚ୍ଛମାରି ସେଇଠି ଫଟାଫଟ ଦ'ଟା ଦଣ୍ଡ ମାରିଦେଲେ---"ଏମିତିକା ଦଣ୍ଡ ବୈଠକ ମାର । ଇଟା ଉପରେ ଗୋଟିଏ ଲମ୍ବ ପଟା ପାରି ତା ଉପରେ ପ୍ରଥମେ ଅଭ୍ୟାସ କର ।'

ଡମ୍ବରୁ ହସି ଉଠି କହିଲା---"ପଟା ଆମେ କେଉଠୁ ପାଇବୁଁ ?"

"କୋଉଠୁ ପାଇବୁ କ'ଣ ? ଏଇ... ଏଇ ଗଛଟାକୁ ହାଣି ଦଉନ" କହି ବାଘ ମାମୁଁ ହସି ଉଠିଲେ । ଆମେ ବି ସମସ୍ତେ ହସି ଉଠିଲୁ ।

+ + + +

ବାଘ ମାମୁଁ ଫେରିଗଲେ ଆଉ ତା'ର କିଛିଦିନ ପରେ ଦୈବାତ୍ ଦିନେ ବର୍ଷା ହେଲା । ବର୍ଷା ଅଉ ବତାସ । ଗୁମ୍ ଗୁମ୍ ହୋଇ ମେଘ ଗର୍ଜିଲା । ଗୃଣ୍ଠି ଗୃଣ୍ଠି କରି ବିଜୁଳି ଚମକିଲା । ଘୂ ଘୂ ହୋଇ ପବନ ବହିଲା । ସାରା ରାତି ବର୍ଷା ଆଉ ବତାସର ତାଣ୍ଡବ ଲୀଳା ଚାଲିଲା ।

ପରଦିନ ସକାଳକୁ ବର୍ଷା ଆଉ ପବନ ସବୁ ଥମିଗଲା । ଖରା ଝଲ୍‌ମଲ୍ କରି ଉଠିଲା । ପଦାକୁ ବାହାରି ଦେଖିଲି ଗଛ ପତ୍ର ସବୁ ଭୂଇଁରେ ଲୋଟି ପଡ଼ିଛନ୍ତି । ବିଜୁଳି ତାର ଛିଣ୍ଡି ଯାଇ ଗୁଡ଼େଇ ଗୁଡ଼େଇ ହୋଇ ଝୁଲୁଛି । ମୁଁ ବୁଲି ବୁଲି ଦେଖୁଥିଲି । ଛତର ଛତ୍ରଭଙ୍ଗ ହୋଇ ପଡ଼ିଥିବା ଗୋଟିଏ ନୂଆ ପୃଥିବୀ ଯେମିତି ।

ଏହି ସମୟରେ ଡମ୍ବରୁ ଧାଇଁ ଧାଇଁ ଆସି ଡାକ ପକେଇଲା—"ଆରେ ହେ-ଇଇ ଜଲ୍‌ଦି ଆ'-ବଢ଼ିଆ କଥାଟା ଅଛି-ଆନନ୍ଦକୁ ଡାକ୍ । ସୋମନାଥକୁ ଡାକ-"

ସୋମନାଥ, ଆନନ୍ଦ, ରାଘବ ସମସ୍ତେ ଆମେ ଡକାଡକି ହୋଇ ଡମ୍ବରୁ ପଛେ ଦୌଡ଼ିଲୁ । ଦୌଡ଼ି ଦୌଡ଼ି ଯାଇ ଯାହା ଦେଖିଲୁ-ଇସ୍-ଖୁସିରେ, ଆନନ୍ଦରେ ଆମେ ସେଇ ପାସ କାଦୁଅରେ ଗଡ଼ିଗଲୁ । ବାଘ ମାମୁଁ ଯେଉଁ ଗଛ କଥା କହୁଥିଲେ ବତାସରେ ସେ ଗଛଟି ଆପେ ଆପେ ଭୂଇଁରେ ଲୋଟି ପଡ଼ିଛି---ଆମ ଗୋଡ଼ତଳେ ପଡ଼ି ନିଜକୁ ଅର୍ପି ଦେଇଛି ଯେମିତି ।

ତତ୍‌କ୍ଷଣାତ୍ ଯେଝାର କର୍ତ୍ତବ୍ୟ ସିଏ ଠିକ୍ କରିନେଲୁ । ଆନନ୍ଦ ଆଉ ସୋମନାଥ ଦୌଡ଼ିଗଲେ କୁରାଢ଼ୀ ଆଣିବାପାଇଁ । ମୁଁ ମାମା ଘରକୁ ଛୁଟିଗଲି ମଜବୁତ୍ ଦୌଡ଼ି ଖଣ୍ଡେ ଆଣିବା ପାଇଁ । ସ୍ଥାକାଶେ ।

ହଠାତ୍ ମଝିରେ ସବୁ ଗୋଳମାଳ ହୋଇଗଲା । ଆନନ୍ଦ କୁରାଢ଼ୀ ଧରି ଘରୁ ବାହାରି ଆସିଲା ବେଳକୁ ତା' ବାପା ହାବୁଡ଼ରେ ପଡ଼ିଗଲା । 'ବଜ୍ଜାତ୍ ପିଲା-' କହି ଆନନ୍ଦର ବାପା ଆନନ୍ଦକୁ ଗୋଟିଏ ଆପ୍‌ପଡ଼ ମାରିଲେ, ଯେଉଁଥିରେ ଆନନ୍ଦ କହିବାନୁଯାୟୀ 'ମୋ' କାନମୁଣ୍ଡା ଭାଁ ଭାଁ ହୋଇଗଲା ପରା ।'

ତେବେ ଯାହାହେଉ, ଡମ୍ବରୁ ତା' କାମରେ ସଫଳ ହୋଇଥିଲା । ମୁଁ ମଧ୍ୟ । ଡମ୍ବରୁ ଆଣିଥିବା କୁରାଢ଼ୀ ବେଣ୍ଟଟି ଅଳପ ଢିଲା ଥିଲା, ଡମ୍ବରୁ ସେଥିରେ ଗୋଟିଏ କାଠି ଗେଞ୍ଜୁଥିଲା-ଏଇ ସମୟରେ ଗୋବର୍ଦ୍ଧନ ବାବୁ ଖଦଡ଼ ଚଦର ଘୋଡ଼ି ହୋଇ ବଡ଼ ଟାଣି ଟାଣି ସେଇବାଟେ ଯାଉଥିଲେ ।

ହଠାତ୍ ଆମକୁ ଦେଖି ଥମିଗଲେ । ଭାରି କଅଁଳ କଣ୍ଠରେ ପଚାରିଲେ—
"ହଇରେ ପିଲେ, କ'ଣ କରୁଛ ଏଠି ? କୁରାଢ଼ୀ କଣ କରିବ ?"

ଆମେ ପ୍ରଥମେ ଦୋ'ଦୋ ପାଞ୍ଚ ହେଲୁ । କିନ୍ତୁ ଗୋବର୍ଦ୍ଧନ ବାବୁ କିଛି ଭୟଙ୍କର ଜଣାପଡ଼ୁ ନଥିଲେ । ବରଞ୍ଚ ସେ ଏମିତି ଭାବେ ଆମକୁ ଚାହିଁଲେ, ଯେମିତି ସ୍ନେହରେ ପଖାଳି ନେଲେ । ମୁଁ ସେ ସ୍ନେହରେ ବିଗଳିତ ହୋଇ ଆମ ଉଦ୍ଦେଶ୍ୟ ବ୍ୟକ୍ତ କଲାରୁ ଗୋବର୍ଦ୍ଧନ ବାବୁ ହସିଲେ । କିନ୍ତୁ ସେ ହସ ଆମକୁ ବାଧିଲା । ହସ ଥମିଲା । ଗୋବର୍ଦ୍ଧନ ବାବୁ କହିଲେ—"ହଇରେ ପିଲେ,ତମ ମୁଣ୍ଡରେ ଭୂତ ପଶିଛି କି ? ଏଇଟା ପରା ମ୍ୟୁନିସିପାଲିଟି ଗଛ । ମ୍ୟୁନିସିପାଲିଟି ଗଛ କାଟିଲେ କ'ଣ ହବ ଜାଣିଛ ?"

"କ'ଣ ହବ ?" ଆମେ ସମସ୍ୱରରେ ପ୍ରଶ୍ନ କଲୁ ।

"ସିଧା ମାମୁଁ ଘରକୁ । ହେଇଁ ହେଇଁ ହେଇଁ ଯାଅ ଯାଅ, ଘରକୁ ଯାଅ । ଏମିତି ଭୁଲ କାମ କରନା ।"

ଆମେ ଜାଣିଥିଲୁ ଗୋବର୍ଦ୍ଧନ ବାବୁ ମ୍ୟୁନିସିପାଲିଟିର ଚେୟାରମ୍ୟାନ ନା କ'ଣ ଅଛନ୍ତି । ତେଣୁ ତାଙ୍କ କଥାକୁ ଆମେ ସତ ମଣିଲୁ । ତା ଛଡ଼ା ସେ ତ ଆମକୁ ଗାଳି ଦେଲେନି । କେତେ ସ୍ନେହରେ ଆମକୁ କହିଲେ ।

ପରଦିନ ମ୍ୟୁନିସିପାଲିଟି ଗାଡ଼ିରେ ଗଛଟି ଲଦା ହୋଇ ଚାଲିଗଲା—ଗୋଟିଏ ମୁର୍ଦ୍ଦାର ପରି ।

× × ×

କିଛିଦିନ ପରେ, ଆମର ଖେଳିବାକୁ ଆଉ କିଛି ନ ଥାଏ । ତେଣୁ ପଡ଼ିଆରେ କର୍କି ଧରି ବୁଲୁଥିଲୁ । ଏଇସମୟରେ ଡମ୍ବରୁ ଧାଇଁ ଧାଇଁ ଆସି କହିଲା—"ହଇରେ ଜାଣିଲଣି-ସେଇ ଯୋଉ ଗଛଟା ନୁହଁ-ଗୋବର୍ଦ୍ଧନ ବାବୁଙ୍କ ଅଗଣାରେ ଦେଖିଲି ।"

ଆମ ସମସ୍ତଙ୍କ ମୁହଁରୁ ହଠାତ୍ ବାହାରି ପଡ଼ିଲା—"କେମିତି ?"

ମୁଁ ଆନନ୍ଦକୁ ଚାହିଁଲି । ଆନନ୍ଦ ସୋମନାଥକୁ ଚାହିଁଲା । ସୋମନାଥ ଡମ୍ବରୁକୁ ଚାହିଁଲା । ଡମ୍ବରୁ ମତେ ଚାହିଁଲା ।

# ବର୍ଷା ରାତିରେ ବୁଢ଼ାଲୋକ

ଝିପୁରୁ ଝିପୁରୁ ବର୍ଷା ଭିତରେ ଅନ୍ଧାରେ ଅନ୍ଧାରେ କିଏ ଜଣେ ଆଗେଇ ଆସୁଛି । ଦାଣ୍ଡରେ ପାଣି ସୁଅ ଛୁଟିଛି । ପାଣି ଭିତରେ ଚବର ଚବର ପାଦ ଶବ୍ଦ ଶୁଭୁଛି । ଗାଁଯାକ ଶୁନ୍ ଶାନ୍ ।

ଲଣ୍ଠନ ଟେକି ବୁଢ଼ାଲୋକଟି ବେକ ଲମ୍ବେଇ ଉଙ୍କିଲା ।

କାଦୁଅ - ଲସର - ପସର - ପାଦ ଦି'ଟା ଦାଣ୍ଡ ପିଣ୍ଡା ଉପରକୁ ଉଠି ଆସିଲା ।

: ଆସେ ମଉସେ ।

: କାହିଁକି ବା, ଡରିଗଲୁ କି ?

: ହେଃ, କେତେ ଅଭିଲ କଥାଟା କହୁଚ । ଆସ ଆସ । ସେ ତମରି ଅପେକ୍ଷା କରୁଥିଲି ।

: ସତେ ?

: ମଲା, କହୁଛୁ ପରା ।

: ହଉ ହଉ, ନାଟିକଣିଟା ଡେଇଁ ଦେଲୁ । ବଡ଼ ଗଣ୍ଡେ ଲାଗିଥିବା । ବଡ଼ ଅସୁ ନା, ହେଇ ?

: ଖୋସିଛି ପରା କାନରେ । ଖାଆସ୍ ତମରି ନାଗି ।

: କେମିତି ଜାଣିଲୁ ବା ମୁଁ ଆଜି ଆସିବି ବୋଲି ?

: ମନ ଡାକିଲା । କହିଲା —ମଉସେ ଆଜି ଆସିବେ । ସେଇଠୁ, ସେଇ ସଞ୍ଜ ପହରୁ ନାଟିକଣି ନଖେଇ ଏଇ ଦୁଆର ମୁହଁରେ ବଇଚି ଯେ ବଇଚି ।

: ବଢ଼ତି ହଉ ତୋ' ମନର । କିଏ ଆଉ ହେଜୁଚି ? ଗଲି ଯେ ଗଲି । ପୋଡ଼ା ପାଉଁଶ ହେଲି । ପଞ୍ଚଭୂତରେ ମିଶିଗଲି । କା ମନରେ କୋଉ ଲାଗି ହେଇ ରହିଲି ?

: ହଅ ।

ଝିପୁରୁ ଝିପୁରୁ ବର୍ଷାକୁ ପିଠି କରି ଦୁଇ ବୁଢ଼ା ବସିଥାନ୍ତି ମୁହାଁମୁହିଁ । ଲଣ୍ଠନର ଦର - ଅନ୍ଧାର ଭିତରେ କେତେବେଳେ ହଲ୍‌ଚଲ୍ ମୁହଁର ଛ କେତେ-ବେଳେ ହାତ ଓ ନାକର ଲମ୍ବା ଲମ୍ବା ଛାଇ ଦାଣ୍ଡ କାନ୍ଥରେ ଆଙ୍କି ହୋଇ ଯାଉଥାଏ ।

: କ'ଣ ବା, ଭୁଲି ପଡ଼ିଗଲୁ ?

: କହନାଇ ଆଉ ସେକଥା । ଏଇ ଅନାଦ୍ଧ ମହାରଣା---ପାଟିରେ ବାଟୁଲି ବାଜୁ ନଥିଲା, ଆଉ ଏବେ କ'ଣନା ତୁଣ୍ଡ ନେଉଛନ୍ତି ।

: ହଁ ବା, ମତେ ତ ଖୁବ ଆଚମ୍ଭିତ ଲାଗୁଚି । ସ୍ତେ, ଏଠିକି ଅଇଲୁ ବେଳଯୁ ଖବୁଛୁ ପରା ଇଏ ଆମ ମଇନେକି ? ନା ଆଉ କା' ପିଣ୍ଡା ଉପରକୁ ଚଢ଼ିଅଇଲୁ ?

: ହଅଅ ।

: ଆରେ ଦାଦପା ଭଲ ଅଛନ୍ତି ?

: ଆଉ ଦାଦପା - ମନତ କାଠପଥର ପାଲଟିଲାଣି ।

: ଆରେ କ'ଣ ହେଇଚି କି ତୋର ଆଜି ? କ'ଣ ଖାଲି ହତାଶିଆ କଥା ସବୁ କହୁଛୁ ?

: ଆସ୍ତେ ମଇନେ ! ବିଧାତା ଭମ ଉପରେ ପ୍ରସନ୍ନ ଥେଲେ । ଜାଣିଲ ? ତେମେ ମରନା ଯେ ତରିଯାଇଛ । ତରିଯାଇଛ । ନଇଲେ ବଞ୍ଚିଥାନ୍ତ କି ଆଉ କେଉଁଠା ବର୍ଷ ମୋ' ପେରକା, ବୁଝିଥାନ୍ତ କେମେତେ କଲବଲ ହ'ନ୍ତି ମଣିଷ, ଜାଣିଲ ?

: ଆରେ ବଡ଼ି କଥା କହୁଚୁଟି ?

: ମ'ଲ, ବଡ଼ି କୋଉ ସନ ଆସୁ ନ ଥେଲା, ନା ଝଡ଼ ହଉ ନଥେଲା ? ତେମେ ଥେଲାବେଳେ କ'ଣ ଧୋଇ ହେଇନ ନା ମରୁଡ଼ି ହେଇନ ? ସବୁ ହଉଥେଲା । ସେକଥା ପଡ଼ନ, ମୁଁ କହୁଚ ନଆଗୁ କଥା, ଜାଣିଲ ?

: ହଁବା, ମୁଁ ଜାଣିନାଇ ? ତୋ ମନକଥା ମତେ ଅଛପା ରହିବ ନା ?

: କ'ଣ୍ଡଟା ଜାଣିଲ ?

: ମଲ୍ଲ, ତୋ ଖେବନ କଥାତ ହେଇଥିବ - ପାଠ ଶାଠ ପଢ଼ିଲାନି କି ?

: ହେଃ, ତେମେ ଖାଲି ଠାପୁକୁ ମାରୁଚ - ଆସ୍ତେ, ମୋ ଖେବନ ପରା ମେଟ୍ରିକ ପାଆନ୍ତି କରି ଗୃହସ୍ଥ କଲାଇ ?

. ଆଉ କୋଉ କଥା ତେବେ ? ଗାଁ ହାଲ୍‌ଚାଲ୍ ଭଲ ନାହିଁକି ?

: ଗାଁ ହାଲ୍ ତେମେ ଦେଖିନା ପରା । ତେମେ ଆଉ କେମେତେ ଦେଖିବ ? ତେମେତ ନଈଁରେ ପୋଡ଼ି ପାଉଁଶ ହେଲ । ନଇଲେ ଦେଖିଥାନ୍ତ । ବିଜୁଳି ଆଲୁଅରେ ଗାଁ ଦାନ୍ତ କେମିତି ଝଟକୁଚି । ଆଜି ବର୍ଷା ଗାଡ଼ଟା ବୋଲନା; ଜାଣିଲ ?

: ହଁମ କପାଳ, ସବୁ କପାଳ - କପାଳରେ ଲେଖା ଥିଲା, ତେମେ ସବୁ ଖେଗୁଛ···

: ଥାଉ ଥାଉ । ଆଉ କହନା ମଇନେ, ଆସ୍ତେ କ'ଣ ଆମ ଖେଗରେ ଲାଗୁଚ ଏବେ ? ସବୁ ଖାଲି ବାହାରକୁ, ଜାଣିଲ, ଉପରକୁ ଖାଲି ଦେଖେଇବା କଥା - ଭିତରଟା ଫାଡ଼ିଦେଖ, କି ନାରଖାର !

: ହେଃ ହେଃ ହେଃ, ଆରେ ଭୁଟା କ'ଣ ଆଜି ବାଇଗୁଙ୍କ ପରି ଖାଲି ହସୁଚୁ ? ନେ' ନେ' ବଡ଼ ଖଣ୍ଡିଆ ଆଉ ଅଧେ ଅଛି । ଟାଣି ଦେ ତ' ଦମ୍ । ଉଷୁମ ହେଇଯାଉ ଦେହଟା - ଓଃ, କେଜାଣି ମାଘ ହେଇଯାଉଚି । କି ବର୍ଷା ନାଗିଚି ବା ? ଦେଖ । ବର୍ଷାକୁ ପୁଣି ପବନ ପିଟିଲାଣି । ଶଳା ! ନେ' ନେ' ବଡ଼ି ଟାଣେ । ହେଃ ହେଃ । ଅଣ୍ଟାକୁ ସିନା କାହାର ଦେହ କୋଳ୍ ମାରିଯାଏ, ଯାର ଯାଃ ଉଷୁମ ଫିଟୁଚି । ନେ'ଧ ।

: କ'ଣ ବା ପଥର ନାଖି ବଇଚୁ ? ଆରେ କ'ଣ ହେଲା ?

: ନାଇଁ, ତେମେ ପାହିଲ ମୁଁ ଟାପରା କରୁଚି । ନାଇଁ ? ହଉ ହେଲା, ହେଲାଏବେ ଟାପରା କରୁଚ ମୁଁ । ଆମ୍ଭେ ତମ ସାଙ୍ଗରେ ଟାପରା କରନ୍ତିନି ତ ଆଉ କା' ସାଙ୍ଗେ କରନ୍ତୁ ? ହେଲା ମୁଁ ଟାପରା କରୁଚ । ହେଲେ ଜାଣିଲ ମଇପେ, ଏ ଗ୍ରୁଡ ଭିତରଟା ଖାଲି ହାଉଁ ହାଉଁ ହଉଥାଏ - ହାଉଁ ହାଉଁ, ଜାଣିଲ, ତମକୁ ଟାପରା ମେତେ ଲାଗିବ, ତେମେ ଆଉ କ'ଣ ଜାଣିଛ ନା ଅଙ୍ଗେ ନିଭେଇଚ ? ତମ ଦେହକୁ ଏ ଦହଗଞ୍ଜ ଭେଦନି । ଜାଣିଲ ? ଦାଣ୍ଡରେ ବୁଲିଆସ । ପୋଖରୀ ତୁଠକୁ ଯାଅ, ଦୋଳ-ବେଦୀରେ ବସି ଗୁଆପ ପିଅ, ମେଳରେ ବସି ବଟାଉ ଠୁକୁରୁ ଠୁକୁରୁ କରୁଥାଅ - ଆମ୍ଭେ ସବୁଠେଇଁ ବୁଲିଆସ, ସେ ଦରଦ ଆଉ କୋଉଠେଇ ନାହିଁ । ଜାଣିଲ । ତେମେ ଥେଲାବେଳେ ଯୋଉ ସୁଖ ଥେଲା ସେ ସୁଖ ଆଉ ଏବେ ନାହିଁ । ମନରେ ଆଉ କାହାର ସେ ସରାଗ ନାହିଁ । କା' ପାଖରେ ଆଉ ସୋ'ଗ ଟିକେ ନାହିଁ . . .

ଦମ୍କାଏ ପବନରେ ହଠାତ୍ କଣ୍ଠନ ଲିଭିଗଲା । ବର୍ଷାର ବେଗ ବଢିବାକୁ ଲାଗିଲା । ପବନରେ ବର୍ଷା ପାଣି ଛୁଟି ହେଉଥିଲା ପିଣ୍ଡା କାନ୍ଥକୁ । ପିଣ୍ଡା ତଳେ ପାଣି ଘୁଅ ଉପରେ ଝୁପୁରୁ ଝୁପୁରୁ ବର୍ଷା ପଡ଼ି ଯାଉଛି ଅବିଶ୍ରାନ୍ତ ।

: ଆରେ ଖେବନ ବୋଉକୁ କହିବା ଗ୍ଲ' ଟିକେ କରିବ ··· ··· ···

: କରେ ଏତେ ଏତେ ଆସି କରି ହେଉଚୁ କ'ଣ ? ହେଇ ! ଆରେ କ'ଣ ହେଲା ? ହଠାତ୍ ସେଇ ଶୁନ୍‌ଶାନ୍ ବର୍ଷା ରାତରେ ବୁଢ଼ୀଟିର' ଖେବନ ବୋଉ, ହାଁ ମୋ' ଖେବନ ବୋଉ' ଚିତ୍କାରରେ ପାଖ ଆଖ ଲୋକେ ଯନ୍ତ୍ର ହୋଇ ବର୍ଷା ଭିତରେ ଦୌଡ଼ି ଆସିଲେ । ଦାଣ୍ଡ ପିଣ୍ଡାରେ ସେତେବେଳେ, ଅନ୍ଧାରରେ, ବୁଢ଼ାଟି ମର୍ମଭେଦୀ ଚିତ୍କାର କରୁ କରୁ ଅଜ୍ଞାନ ହୋଇ କାନ୍ଥ କାନ୍ଥ ଗଡ଼ି ଯାଉଥାଏ । ତା' ଆଖ ପାଖରେ ଆଉ କେହି ନ ଥିଲେ । ପଡ଼ିଶା ଘରର ଜଣେ ବୁଢ଼ାର ଘର ଭିତରକୁ ପଶିଯାଇ ଦେଖିଲେ ଯେ ବୁଢ଼ାର ଖଟିଆ, ତେମି ବୁଢ଼ୀର ଅଣ୍ଟା ଶବ ମଞ୍ଚଣା ଉପରେ ପଡ଼ି ରହିଚି ।

(୧୮୯୦)

ସେ ରାଜ୍ୟରେ ଫଗୁଣ ଥରେ କେବେ ଆସିଲା ଯେ ଆଉ ବାହୁଡ଼ିଲା ନାହିଁ । ଗଛରେ ଗଛରେ ଫୁଲ ଥରେ କେବେ ଫୁଟିଲା ଯେ ଆଉ ମଉଳିଲା ନାହିଁ । ନଦୀମାନେ ସ୍ରୋତସ୍ୱିନୀ ହେଲେ ଯେ ଧାର ତାଙ୍କ ଆଉ ଶୀର୍ଣ୍ଣ ହେଲା ନାହିଁ । କେବେ କେଉଁ କାଳରେ ଏ ସବୁ ଥରେ ଘଟିଥିଲା ସେ କାହାର ଆଉ ସ୍ମରଣରେ ନାହିଁ । ରାଜ୍ୟ ସାରାରେ ସେମିତି ରଙ୍ଗର ମଉଚ୍ଛବ ଚାଲିଛି । ଯେଣେ ଚାହିଁ ଗଛ ବୃଛ ନଦୀ ନାଳ ରଜାଙ୍କ କୋଠି କଟେଇ ଏପରିକି ମାଟି-କାଠ-ନାଲ ଛପର, ସବୁଠି ନାନା ରଙ୍ଗର ହୋଲି । ବେଶ ପୋଷାକ, ବର୍ଣ୍ଣରେ ବର୍ଣ୍ଣମୟ । ରାସ୍ତାଘାଟ ପୋଳ- ରଙ୍ଗର ଛଟାଛଟିରେ ରଂଗୀନ । ଆକାଶରେ ମେଘ ମଧ୍ୟ ନାନା ବର୍ଣ୍ଣଛଟାରେ ଭାସିଯାଏ । ବର୍ଷା ହେଲେ ଇନ୍ଦ୍ରଧନୁର ସପ୍ତରଙ୍ଗ ଗୁଣ୍ଡା ଗୁଣ୍ଡା ହୋଇ ଝରିପଡ଼େ । ଏହିପରି କେବେ କେଉଁ ସ୍ମରଣାତୀତ କାଳରୁ ଚାଲିଛି ରଙ୍ଗର ମଉଚ୍ଛବ ।

ହଠାତ୍

ହଠାତ୍ ଦିନେ ଦେଖାଗଲା ରାଜ-ନଗରର ଛକ ଉପରେ ନାଲି କୃଷ୍ଣଚୂଡ଼ା ପେନ୍ଥାଟିଏ ଶୁଖିଯାଇ ଗଛରୁ ଝରି ପଡ଼ିଛି ।

ଆଶ୍ଚର୍ଯ୍ୟ !

ଆଶ୍ଚର୍ଯ୍ୟ !

ଲୋକ ମୁଖରେ; ରାସ୍ତାରେ; ଘାଟରେ ଓ ଶେଷରେ ରାଜଦରବାରେ ଖେଳି ବୁଲିଲା ସେହି ଗୋଟିଏ ଶବ୍ଦ ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ !

ଫୁଲ ପେନ୍ଥାଟିଏ କିପରି ଏପରି ବିବର୍ଣ୍ଣ ହୋଇ ଝରି ପଡ଼ିଲା ରାଜ ରାସ୍ତା ଉପରେ !

: ମହାମନ୍ତ୍ରୀ !

: ହୁଜୁର ।

: ଏ କଣ ଶୁଣୁଛି ମୁଁ ?

: ହୁଁ ?

: କ'ଣ ଶୁଣିବାକୁ ମିଳୁଛି ?

: ମହିମା; ଯାହା ଶୁଣିଛନ୍ତି ତାହା ସତ୍ୟ । ସମ୍ପୂର୍ଣ୍ଣ ସତ୍ୟ । ମୁଁ ସ୍ୱଚକ୍ଷୁରେ ଦେଖିକି ଆସିଛି ମହିମା ।

: ଆଶ୍ଚର୍ଯ୍ୟ !

: ହୁଜୁର; ଆଶ୍ଚର୍ଯ୍ୟ ହେବାର ସମୟ ଏ ନୁହେଁ ।

: ମହାମନ୍ତ୍ରୀ !

: ପ୍ରଭୁ ?

: ରହସ୍ୟ ରଖ ତୁମର ।

: ପ୍ରଭୁ, ମୁଁ କହିବାକୁ ଚାହୁଁଛି, ଆଶ୍ଚର୍ଯ୍ୟ ହେବାର ସମୟ ଏ ନୁହେଁ, ଏହାର ପୁଂଖାନୁପୁଙ୍ଖ ଅନୁସନ୍ଧାନ ଆବଶ୍ୟକ । ଏହା ଆମ ରାଜ୍ୟ ପ୍ରତି ଏକାନ୍ତ ଅଶୁଭ ସୂଚନା ।

: ମହାମନ୍ତ୍ରୀ, ସଂଦେହ ତୁମର ଅମୂଳକ ନୁହେଁ ।

: ପ୍ରଭୁ ?

: କିନ୍ତୁ ଏହାର ଅବସାନ ତୁମକୁ ହିଁ କରିବାକୁ ପଡ଼ିବ ମହାମନ୍ତ୍ରୀ ! କାଲି ସନ୍ଧ୍ୟା ଯାଏଁ ମୁଁ ତୁମକୁ ସମୟ ଦେଲି ।

: ଯଥାଆଜ୍ଞା, କହି ମହାମନ୍ତ୍ରୀ ତା'ପରେ ଅନୁସଂଧାନ କାର୍ଯ୍ୟରେ ବାହାରି ଗଲେ ଓ ପରଦିନ ସନ୍ଧ୍ୟାବେଳେ ରଜାଙ୍କ ସମ୍ମୁଖରେ ଦୁଇ ଅପରାଧୀଙ୍କୁ ଆଣି ହାଜର କରାଇଲେ ।

: ପ୍ରଭୁ, ଦୁଇ ଆସାମୀ ।

ରାଜା ଦୁଇ ଆସାମୀଙ୍କୁ ଆପାଦ ମସ୍ତକ ଚାହିଁଲେ-ଜଣେ ଯୁବକ ଓ ଅନ୍ୟ ଜଣେ ଯୁବତୀ । ଦୁହେଁ ଅପୂର୍ବ ସୌନ୍ଦର୍ଯ୍ୟ ଓ ରୂପର ଅଧିକାରୀ । ଉଭୟଙ୍କ ମୁହଁରେ ଏକ ସରଳ ପ୍ରସନ୍ନତା । ରାଜା ଆଶ୍ଚର୍ଯ୍ୟ ହେଲେ ।

ମହାମନ୍ତ୍ରୀ ! ତୁମେ ଏ ରହସ୍ୟକୁ ଅଧିକ ଘନୀଭୂତ କରି ତୁମ ଦାୟିତ୍ୱ ଏଡ଼ାଇବାକୁ ଚାହୁଁଛ ।

: ନା ମହିମା । ଏ ଦୁହେଁ ପ୍ରକୃତ ଅପରାଧୀ ।

: କିପରି ?

: ପ୍ରଭୁ, ଯେଉଁଦିନ କୃଷ୍ଣଚୂଡ଼ା ଗଛରୁ ରକ୍ତ ବର୍ଣ୍ଣର ଫୁଲ ସେମାନେ ବିବର୍ଣ୍ଣ ହୋଇ ଝଡ଼ି ପଡ଼ିଲା, ସେହି ଦିନ ସନ୍ଧ୍ୟାରେ ଏ ଦୁଇ ଅପରାଧୀ ନଦୀକୂଳରେ, ଗଛର ଛାଇ ତଳେ ବସି ପରସ୍ପର ପ୍ରତି ପ୍ରେମ ନିବେଦନ କରୁଥିଲେ । ଏହା ଯେଉଁ ମାନଙ୍କ ଦୃଷ୍ଟି ଗୋଚର ହୋଇଥିଲା ସେମାନେ ସାକ୍ଷ୍ୟ ଦେବା ପାଇଁ ଏଠାରେ ଉପସ୍ଥିତ ଅଛନ୍ତି ମହିମା ।

: ଏହାହିଁ କ'ଣ ସେମାନଙ୍କର ଅପରାଧ ?

: ପ୍ରଭୁ, ଏ ରାଜ୍ୟର ନିୟମ ଅନୁଯାୟୀ କୌଣସି ପୁରୁଷ ଅଥବା ସ୍ତ୍ରୀ କେହି ପରସ୍ପରଙ୍କ ପ୍ରତି ପ୍ରେମ ନିବେଦନ କରି ପାରିବେ ନାହିଁ । ଏହାହିଁ ଏ ରାଜ୍ୟର ପ୍ରକୃତ-ଦଣ୍ଡ ନିୟମ ।

: ମହାମନ୍ତ୍ରୀ ?

: ପ୍ରଭୁଁ ?

: ଏ 'ପ୍ରେମ' ଶବ୍ଦର ଅର୍ଥ କ'ଣ ?

: ପ୍ରଭୁଁ, ପରସ୍ପର ପ୍ରତି ପ୍ରଗାଢ଼ ଅନୁରକ୍ତି, ଆନ୍ତରିକ ସ୍ନେହ, ଆବେଗର ପ୍ରକାଶକୁ ଆମ ପ୍ରାକୃତିକ ସମ୍ବିଧାନରେ 'ପ୍ରେମ' କୁହାଯାଇଛି । ଏବଂ ଏହା ନିଷିଦ୍ଧ ।

: ହୁଁ । ଯୁବକ ! ତୁମେ ଏ ନିଷିଦ୍ଧ କାର୍ଯ୍ୟ କାହିଁକି କଲ ?

: ମୁଁ ଜାଣେନା ମହାରାଜ !

: ଆଶ୍ଚର୍ଯ୍ୟ ! ତୁମେ ଜାଣନା, ତୁମେ କାହିଁକି ନିଷିଦ୍ଧ କାର୍ଯ୍ୟ କରିବାକୁ ଗଲ ?

: ନା, ମହାରାଜ ।

: ହୁଁ । ଆଉ ତୁମେ ଯୁବତୀ ?

: ମୁଁ ଜାଣେନା ମହାରାଜ ।

: ଆଶ୍ଚର୍ଯ୍ୟ ! ମହାମନ୍ତ୍ରୀ !

: ପ୍ରଭୁଁ ?

: ଏମାନେ ତ ଜାଣନ୍ତି ନାହିଁ କାହିଁକି ଏମାନେ ଏପରି ଅପରାଧ କରିଛନ୍ତି ! ଏମାନେ ନିର୍ଦ୍ଦୋଷ ।

: ନା ମଣିମା । ଏମାନଙ୍କର ଅପରାଧ-ମୂଳକ କାର୍ଯ୍ୟ ଦ୍ୱାରା ଆମ ରାଜ୍ୟରେ ଅଶୁଭ ପ୍ରକାରର ସୂଚନା ମିଳନ୍ତୁ । ଏହା ରାଜ୍ୟବାସୀଙ୍କ ପକ୍ଷେ କ୍ଷତି କାରକ ହୋଇପାରେ ।

: ହୁଁ । ଯୁବକ ଯୁବତୀ ! ତୁମେ ଦୁହେଁ ତୁମ ମାନଙ୍କ କାର୍ଯ୍ୟ ଦ୍ୱାରା ମୋ' ପ୍ରଜା-ମାନଙ୍କର ଅମଙ୍ଗଳ ଡାକି ଆଣୁଛ ।

: କିପରି ମହାରାଜ !

: କିପରି ମହାରାଜ !

: କିପରି ମହାମନ୍ତ୍ରୀ ?

: ପ୍ରଭୁ, ପ୍ରଥମରୁ ମୁଁ କହୁଛି କୁମ୍ଭଡ଼ା ପେଣ୍ଡାଟିଏ ତାହାର ରଙ୍ଗ ହରାଇ ବିବର୍ଣ୍ଣ ହୋଇ ରାସ୍ତା ଉପରେ ପଡ଼ିଗଲା ।

ପାଟିରେ ଗୁଣ୍ଡି ଦେଲେ । ଘୁଳୁଜୁ ଘୁଳୁଜୁ କରି ସେବଢ଼ ସେବଢ଼ ଆଙ୍ଗୁର ଜୋର୍‌ରେ ଗୋଡ଼ ହଲେଇବାକୁ ଲାଗିଲେ । କହିଲେ—"ତମର ସବୁ ଆଉ ବୁଦ୍ଧି ବୃଦ୍ଧି କିଛି ହବନି । ଆରେ, ଜୀବନଯାକ କ'ଣ ଖାଲି ପିଠାପିଠି ହଉଥିବ ? ହୁଁ । ?" କହି ପାନ ଚୋବାଇଲେ ଓ ସାମ୍ନାରେ ବସିଥିବା ଟୋକା ସତୀଶ ବାବୁଙ୍କୁ ଚାହିଁଲେ । ଏଇ ଚାହିଁଲା ବେଳେ ଗୋଡ଼ ଦି'ଟା ତାଙ୍କର ଦ୍ୱିଗୁଣ ଜୋର୍‌ରେ ଦୋହଲିବାକୁ ଲାଗିଲା । ଅର୍ଥାତ୍—ଗ୍ୱେଗ୍ୱବାଳି ଉପରେ ଛୁଡ଼ା ହେଉଛି ବୋଲି ମୁଁ ଡରି ଯାଉଥିଲି ହୋ । ମିଛଟାରେ କେମିତି ଜାକି ହୋଇ ଯାଉଥିଲି ମୁଁ । ହେଃ । କେଉଁଠି ମୁଁ । କାହା ଉପରେ ପାଦ...ଷି ହେଇ ମୁଁ ଏବେ ଉପରେ ଛୁଡ଼ା ହେଉଛି ଆଜି ? ଏଁ ? ହେଃ ହେଃ, ଦେଖ ଦେଖ ।

( ୧୯୭୦ )

# ଅଭିମାନ

ତୁ ମତେ ଭୁଲିଗଲୁ ? ଭଲ କଲୁ । ଏହିପରି ହେବା କଥା । ଯେଉଁ ଗଛରୁ ତୁ ଫୁଲ୍ ତୋଳିବାକୁ ଆସିଥିଲୁ ସେ ଦିନ, ସେ ଗଛଟି ମରିଗଲାଣି । ତୁ ସେ ଦିନ ପଚାରିଲୁ—ଦି'ଟା ଫୁଲ ନେବି ? ମୁଁ କହିଲି—ନା । ଗମ୍ଭୀର ହୋଇ କହିଲି । ମୁଁ ବାରନ୍ଦାରେ ଚେୟାରକୁ ଆଉଜି ପଢୁଥିଲି । ଦେଖିଲି ତୁ ଗେଟ୍ ଖୋଲିଲୁ । ଆସିଲୁ । ମୋ ପଢ଼ା ବନ୍ଦ ହୋଇଗଲା । ସେହିପରି ବହି ଉପରେ ଆଖି ମୁଁ ରଖି କହିଲି—ନା । ତୁ ଡରିଗଲୁ ବୋଧହୁଏ, ତୁ ଥରେ ମତେ କହିଥିଲୁ, ଭୁଲିଯିବୁଣି ବୋଧହୁଏ, ମୋର ମନେ ଅଛି ତୁ କହିଥିଲୁ ଯେ ମୁଁ ଗମ୍ଭୀର ହୋଇଗଲେ ତତେ ଭୁଆଁଡ଼େ ଡର ଲାଗେ । ତତେ ଡରେଇବାକୁ ମତେ ଭଲ ଲାଗେ । ବୟସ ଅଳ୍ପ ହୋଇଥାଏ ତ—ବାର ତେର ବୋଧହୁଏ । ନୁହେଁ ? ତୁ ଡରିଗଲୁ । କାଂରୁ ଡର ପଳେଇଗଲୁ ନାହିଁ ତ ? ଠିଆ ହୋଇ ରହିଲୁ । ଗୋଲ ଗୋଲ ଆଖି ଦି'ଟା ଆହୁରି ଗୋଲ ଗୋଲ ହୋଇଗଲା । ଦାନ୍ତରେ ଓଠକୁ କାମୁଡ଼ି ମତେ ଗ୍ରୀହିଁ ଛୁଡ଼ା ହୋଇ ରହିଲୁ—ଓଠ କାମୁଡ଼ିବା ତୋ'ର ଗୋଟିଏ ମୁଦ୍ରାଦୋଷ, ନା ତୋ' ପିଲାଳିଆମୀ ? ମୁଁ ବହିରୁ ମୁହଁ ଉଠାଇଲି । ଆଃ ତୋ ମୁହଁରେ ଖୁସି ଝଲ ଉଠିଲା । ତୁ ହସି ଦେଇ ଉଁ ଭିଁ କହି ମୁଣ୍ଡକୁ ଦି'ଥର ଥର ଏପଟ ସେପଟ କରି ଫୁଲ ତୋଳିବାକୁ ଲାଗିଲୁ । ମୋ' ଅନୁମତିକୁ ତ ଆଉ ଅପେକ୍ଷା କଲୁ ନାହିଁ ? ତୁ କ'ଣ ମୋ' ଆଖିରେ ପଲକ ପାଇଁ ଆଖି ରଖିଲୁ ଆଉ ସବୁ ବୁଝିଗଲୁ ? ଏବେ ତୋ'ର ସେଇ ଛବି ମୋର ମନେ ପଡ଼େ ବେଳେବେଳେ—କଅଁଳ ଘାସ, ଘାସ ଉପରେ ସ୍ୱଚ୍ଛର କାକର, କାକର ଉପରେ ସକାଳର ଖରା, ଖରାରେ ଫୁଲ ଭାରନତ ଗଛ ଆଉ ଗଛର ପତ୍ର ଗହଳି ଫାଙ୍କେ ଫାଙ୍କେ ତୋ' ମୁହଁ ଆଉ ଭ୍ରୂଲତା ଆଉ ଆଖି— ସେ ଛବି ମୋର ମନେ ପଡ଼େ ଏଇ ଯେପରି ସେ ଦିନ ଅନେକ ରାତିରେ ଅଫିସରୁ ଘରକୁ ଫେରୁଥିଲି, ଅଫିସ୍‌ର ସବୁଜ କୋଠରୀ ଭିତରୁ ଝାଳନାଳ ହୋଇ ବାହାରିଲି ଆଉ ଜହ୍ନ-ଭିଜା ପବନ ଛୁଇଁଗଲା ମୋ' ମୁହଁ ସାରା, ସେ ପବନରେ ତୋ' ବାସ୍ନା ପାଇଲି, ସାଇକେଲ ଠେଲିଲି ଉଠାଣିରେ ଅଥଚ ପରିଶ୍ରାନ୍ତ ହେଲି ନାହିଁ, ତୋ' କଣେଶ୍ୱ ଦେହ ଯେପରି ଜହ୍ନାଳୁ ହୋଇ ମତେ ଆଉଜି ଶୋଇ ରହିଥାଏ । ଆମ ଘର ଓ ସହର ମଝିରେ ଗୋଟିଏ ଛୋଟ ପୋଲ, ତା' ତଳେ କେନାଲ୍—ବର୍ଷା ହୋଇ ଗୁଡ଼ିଯାଇଥାଏ—କେନାଲ୍‌ରେ କଳକଳ ପାଣି, ପାଣିରେ ସିଆଁର୍ କାଟି ଖେଳୁଥିବା ଛୋଟ ଛୋଟ ମାଛ, ଆଉ ମାଛର ପିଠିରେ ପିଠିରେ ଜହ୍ନ, ଜହ୍ନ-ସ୍ନାତ ଘାସ, ମାଟି, କାଦୁଅର ବାସ୍ନା ଆଉ ପବନ— ମତେ ଭଲ ଲାଗିବାର ଆବେଶରେ

ଆପ୍ଟୁତ କରି ଦେଉଥାଏ । ଖୁବ୍ ଭଲ ଲାଗିଲା ମତେ ଆଉ ଖୁବ୍ କଷ୍ଟ ହେଲା । କଷ୍ଟ ହେଲା ଯେ ତୁ ନାହୁଁ ପାଖରେ । ଥିଲେ ତୋ' ହାତରେ ଧୀରେ ଧୀରେ ହାତ ଛୁଆଁଇ ଆଣିଥାନ୍ତି । ସେଇ ସ୍ପର୍ଶରେ ଆମେ କେନାଲର ପାଣି ମାଛ ଜହ୍ନ ଘାସ ମାଟି କାକୁଅର ବାସ୍ନା ଆଉ ପବନ ଆଉ ବର୍ଷା-ପରର ଆକାଶରେ ଆସ୍ତେ ଆସ୍ତେ ମିଳେଇ ଯାଇଥାନ୍ତେ । କିନ୍ତୁ ସେପରି ହେଲା ନାହିଁ କାରଣ ତୁ ନଥିଲୁ ପାଖରେ । ସେଥିପାଇଁ କଷ୍ଟ ହେଲା । ତୁ ମତେ ଭୁଲିଗଲୁ । ନୁହେଁ ? ଭଲ କଲୁ । ମୋ' ଦୁଃଖକୁ ମୁଁ ଜଜର କରି ପାଇଲି । କଦେଲା ସମସ୍ତ ସାଥିରେ ମୋର ମିତାଳି ହେଲା । କେତେ ଖବର ବନମସ୍ତ ହୁଏ ଆମର । ଆଉ ଆକାଶ ବି । ଯେପରି ଗାଲରେ ହାତ ଦେଇ ବସିଥାଏ ଆଉ ମୁଁ ମୋ' ଦୁଃଖ କଥା କୁହେ, ତା' ପରେ ଆକାଶ ଆସି ମୋ ଅନୁଭବରେ ମିଶିଯାଏ । ସେ ଦିନ ମଧ୍ୟ ଆକାଶ ଆସି ମୋ' ଅନୁଭବରେ ମିଶି ଯାଇଥିଲା, ଯେଉଁଦିନ ସେ ଫୁଲ ଗଛଟି ମରିଗଲା । 'ଗଛଟି ମରିଗଲା' ଏହି ଦୁଃଖଟି ତୋ' ଆଗରେ କହିବା ପାଇଁ ମୁଁ ଅଧୀର ହୋଇ ଉଠିଲି । ତୋ' ଘରକୁ ଗଲି । ସନ୍ଧ୍ୟାବେଳେ । ତୁ ଏକୁଟିଆ ଥାଉ । ପ୍ରାର୍ଥନା କରୁଥିଲୁ । ସରିଲା । ଆସିଲୁ । ମୁଁ ନୀରବରେ ବସି ରହିଥିଲି । ତୁ ପଚାରିଲୁ—ଆରେ, ତମେ କେତେବେଳୁ ଆସିଲଣି ? ମୁଁ ଧ୍ରିମିତ କଣ୍ଠରେ କହିଲି—ଏଇଲେ । ତା'ପରେ କହିଲି—ତତେ ଗୋଟିଏ କଥା କହିବାର ଥିଲା । ତୁ ପଚାରିଲୁ—କ'ଣ ? ମୁଁ, କାହିଁକି କେଜାଣି, କହିଲି—ପାଖକୁ ଆ କହିବି । ତୁ ପାଖକୁ ଘୁଞ୍ଚି ଆସିଲୁ, ନିଃଶଙ୍କା । ମୁଁ କହିଲି—ଏଇ ଜାଣିଛୁ ? ତୁ ମୋ ଆଖି ଉପରେ ଆଖି ରଖି ପଚାରିଲୁ କ'ଣ ? 'ଗଛଟି ମରିଗଲା', ଏଇ ଦୁଃଖଟି ତୋତେ କହିବା ପାଇଁ ମୁଁ ବ୍ୟାକୁଳ ହୋଇ ଉଠିଥିଲି । କିନ୍ତୁ ପରିବର୍ତ୍ତେ, ସେହି ମୁହୂର୍ତ୍ତରେ ହଠାତ୍ କାହିଁକି କେଜାଣି ମୋର ମନେହେଲା ଯେ ତୁ ମତେ ଦିନେ ଭୁଲିଯିବୁ । ଏହିପରି ମନେ ହେଲା ଆଉ ମୁଁ ତୋତେ କିଛି ନ କହି ମୋ' ଆଙ୍ଗୁଠି ତୋ' ଓଠ ଉପରେ ବୁଲେଇ ଆଣିଲି । ତୁ ହଠାତ୍ ଚମକି ପଡ଼ିଲୁ, ତାପରେ କିପରି କାନ୍‌କାନ୍ ହୋଇଗଲୁ ଆଉ ପର ମୁହୂର୍ତ୍ତରେ ଏକ୍‌କା ଦୌଡ଼ରେ ଘର ଭିତରକୁ ପଳେଇଗଲୁ ।

●

ତା ପରେ ତ ତୁ ମତେ ଭୁଲିଗଲୁ । ନୁହେଁ ? ଭଲ କଲୁ । ଏହିପରି ହେବା କଥା ।

(୧୯୭୪)

❊ ପ୍ରକାଶକମାନଙ୍କ ଅବହେଳାରୁ ପ୍ରତିଭାବାନ୍ ନୂତନ ଲେଖକ/ଗବେଷକମାନଙ୍କୁ ରକ୍ଷା କରିବା ନିମିତ୍ତ ମହାନଦୀ ବୁକ୍‌ସ୍‌ର "ଲେଖକ-ପ୍ରୋତ୍ସାହନ ଯୋଜନା" ଉଦ୍ଦିଷ୍ଟ ।

❊ ଏହି ଯୋଜନାନୁସାରେ ପାଣ୍ଡୁଲିପି ଦାଖଲ କରିବାର ଅଠମାସ ମଧ୍ୟରେ ଗୃହୀତ ପାଣ୍ଡୁଲିପିଟି ପୁସ୍ତକ ଆକାରରେ ପ୍ରକାଶ ପାଏ ।

❊ ସାମାନ୍ୟ କିଛି ମୂଳଧନ ଖଟାଇ (ଯାହା ବର୍ଷକ ପରେ ଫେରାଇ ନିଆ ଯାଇପାରେ) ଲେଖକ/ଗବେଷକ ମାନେ ସମ୍ମାନର ସହ ୧୫ (ପନ୍ଦର) % ରୟାଲ୍‌ଟି ପାଆନ୍ତି ।

❊ ଏହି ଯୋଜନାନୁସାରେ ଏଯାବତ୍ ନିମ୍ନଲିଖିତ ପୁସ୍ତକ/ଗବେଷଣା-ନିବନ୍ଧ ପ୍ରକାଶ ପାଇ ସାରିଲାଣି :

୧ । ପ୍ରହ୍ଲାଦ ସତ୍ୟନାରାୟଣ ନନ୍ଦଙ୍କ **ଶବ ସଂଗମ ଓ ଅନ୍ୟାନ୍ୟ କବିତା** ।

୨ । ଧରଣୀଧର ସାହୁଙ୍କ **ସ୍ମୃତି ଓ ସଂକେତ** ।

୩ । କୈଳାସ ଚନ୍ଦ୍ର ତ୍ରିପାଠୀଙ୍କ **ନଚେତ୍ ବିଶ୍ଵଜିତ୍** ।

୪ । ଶ୍ରୀକାନ୍ତ ଦାସଙ୍କ **ପଦ୍ମ ଘୁଞ୍ଚିଯାଏ** ।

୫ । ଚିତ୍ତରଂଜନ ମିଶ୍ରଙ୍କ **ମୁଖଶାଳା** ।

୬ । ରମେଶ ପଟ୍ଟନାୟକଙ୍କ **ଦୌଡ଼ ପ୍ରତିଯୋଗିତାରେ ଆଂଗୁଳେ ମଣିଷ** ।

୭ । ରମାକାନ୍ତ ସାହୁଙ୍କ **Tense and Time in English and Oriya**.

୮ । ବାସନ୍ତ ପାଲ୍‌ଙ୍କ **ବାପାଂକ ବଣି ଆଂଗୁଠି** ।

❊ ଏ ସମ୍ପର୍କରେ ସବିଶେଷ ବିବରଣୀ ଏଇ ଠିକଣାରୁ ମିଳେ :—ଅବୈତନିକ ନିର୍ଦ୍ଦେଶକ, ମହାନଦୀ ବୁକ୍‌ସ୍, ମୂଲ୍ୟାୟନ ବିହାର, ପ୍ଲଟ୍ ନଂ ୩୮୩୫(ପି)/୨୦ ଗଡ଼ ଗୋପୀନାଥ ନଉ କଲୋନୀ, ରସୁଲ୍‌ଗଡ଼, ଭୁବନେଶ୍ୱର—୭୫୧୦୧୦ ।